# ରୀତିକାବ୍ୟ ଓ ସମର ସାହିତ୍ୟ

ଅଧ୍ୟାପକ ଖଗେନ୍ଦ୍ର ମଲ୍ଲିକ, ଏମ୍.ଏ.



ଓଡ଼ିଶା ବୁକ୍ ଷ୍ଟୋର

# ରୀତିକାବ୍ୟ
# ଓ
# ସମର ସାହିତ୍ୟ

ଶ୍ରୀ ଖଗେନ୍ଦ୍ରନାଥ ମଲ୍ଲିକ, ଏମ୍. ଏ.



ଓଡ଼ିଶା ବୁକ୍ ଷ୍ଟୋର

# ରୀତିକାବ୍ୟ ଓ ସମର ସାହିତ୍ୟ

ଶ୍ରୀ ଖଗେନ୍ଦ୍ରନାଥ ମଲ୍ଲିକ, ଏମ୍. ଏ.

ପ୍ରକାଶକ
ଶ୍ରୀ ଗୋବନ୍ଦଚରଣ ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦବିହାରୀ, କଟକ-୭୫୩୦୦୨

ପ୍ରଥମ ପ୍ରକାଶ—୧୯୭୭

ମୁଦ୍ରଣ
ହୀରା ପ୍ରିଣ୍ଟିଂ ଓ୍ୱାର୍କସ୍
ଝୋଲାସାହି, କଟକ-୭୫୩୦୦୧

ମୂଲ୍ୟ—ଚାରି ଟଙ୍କା ମାତ୍ର

RITIKAVYA O' SAMAR SAHITYA

By
Sri Khagendranath Mallick, M. A.

Published by
G C. Patra
Orissa Book Store
Binodbihari, Cuttack-753002
1977
Printed by
Heera Printing Works
Jhola Sahi, Cuttack-753001
Price : Rupees Four only

# ଉତ୍ସର୍ଗ

ଯୁବ ଶକ୍ତିର ପ୍ରତୀକ,
ସଂଗ୍ରାମୀ ଜନନାୟକ
ଓଡ଼ିଶାର ଆଇନ୍, ସାଂସ୍କୃତିକ ବ୍ୟାପାର,
ଶ୍ରମ ଓ ଯୋଗାଣ ବିଭାଗ ମନ୍ତ୍ରୀ

**ଶ୍ରୀଯୁକ୍ତ ବିଶ୍ୱଭୂଷଣ ହରିଚନ୍ଦନଙ୍କ**
**କରକମଳରେ**

ଡକ୍ଟର କୃଷ୍ଣଚରଣ ବେହେରା, ଏମ୍. ଏ. ପି. ଏଚ୍. ଡ଼ି.

# କାବ୍ୟାଙ୍ଗ କଳା

ସ୍ୱୟଂ କାବ୍ୟ ତ କଳାପ୍ରତିମା ! କାବ୍ୟାଙ୍ଗରୂପୀ ସମାଲୋଚନା ମଧ୍ୟ ଏକପ୍ରକାର କଳା । ଅନେକେ କିନ୍ତୁ ସମାଲୋଚନାକୁ କଳା-ଦୃଷ୍ଟିରୁ ବିବେଚନା କରନ୍ତି ନାହିଁ । ସମାଲୋଚନାର ଭାଷା ଓ ଭଙ୍ଗୀ ଯେ କଳାତ୍ମକ ହେବା ଆବଶ୍ୟକ—ପୃଥିବୀର ବହୁ ଉଚ୍ଚକୋଟୀର ସମାଲୋଚନା (ଯଥା—ରବୀନ୍ଦ୍ରନାଥ ଓ ଏଲିୟଟ୍‌ଙ୍କ ସମାଲୋଚନା) ଯେ ସର୍ଜନାତ୍ମକ ସାହିତ୍ୟ ସ୍ତରକୁ ଉନ୍ନୀତ ହୋଇଯାଇଛି, ଏ କଥା ସେମାନେ ଖିଆଲ କରିପାରନ୍ତି ନାହିଁ । ଡକ୍ଟର ମାୟାଧର ମାନସିଂହଙ୍କ ଭାଷାରେ କହିଲେ,—ସାହିତ୍ୟ ସମାଲୋଚନା 'ସୂକ୍ଷ୍ମ, କୋମଳ, ଅନ୍ତର୍ଦୃଷ୍ଟିସମ୍ପନ୍ନ ପ୍ରଚେଷ୍ଟା' ହେବା ବିଧେୟ । ପ୍ରାୟ ପାଞ୍ଚଶହ ବର୍ଷ ତଳେ ସେଇଥିପାଇଁ ବିଶ୍ୱନାଥ କବିରାଜ ଆପଣା 'ସାହିତ୍ୟ ଦର୍ପଣ' ଗ୍ରନ୍ଥକୁ 'କାବ୍ୟାଙ୍ଗ' ବୋଲି କହି କାବ୍ୟ-ଫଳ ଏବଂ ସମାଲୋଚନା ଫଳର ଏକତ୍ୱ ଦର୍ଶାଇଛନ୍ତି ।

ଆମର କାବ୍ୟାଙ୍ଗକଳାର ପରଂପରା ଦୀର୍ଘ ହେଲେ ବି ପୁଷ୍କଳ ବୋଲି କହି ହେବନାହିଁ । ଉପେନ୍ଦ୍ର ଭଞ୍ଜ (ରସପଞ୍ଚକ), ଯଦୁମଣି ରାଉତରାୟ (କବି କଳ୍ପଦ୍ରୁମ) ପ୍ରମୁଖଙ୍କଠାରୁ ଆରମ୍ଭ କରି ଡକ୍ଟର ନଟବର ସାମନ୍ତରାୟ, ଅଧ୍ୟାପକ ଚିନ୍ତାମଣି ବେହେରା ପ୍ରମୁଖଙ୍କ ପର୍ଯ୍ୟନ୍ତ କାଳ-ସୀମା ପ୍ରାୟ ଅଢ଼େଇ ଶହ ବର୍ଷ; କିନ୍ତୁ ଏହା

ମଧ୍ୟରେ ପ୍ରକାଶିତ ସାହିତ୍ୟ ସମୀକ୍ଷାତ୍ମକ ଗ୍ରନ୍ଥର ସଂଖ୍ୟା ବୋଧହୁଏ ଅଡ଼େଇ ଶହ ହେବନାହିଁ । ଏଠାରେ ଷ୍ଟାଣ୍ଡାର୍ଡ୍ ସମାଲୋଚନା ଗ୍ରନ୍ଥ ବହୁଁ ବୋଲି ଯାଉଛି । ତେଣୁ ଆମର କାବ୍ୟାଙ୍ଗ କଳାର ପୁଷ୍କଳତା ପାଇଁ ବହୁସଂଖ୍ୟକ ସମୀକ୍ଷକ ବା ସମାଲୋଚକ ବାହାରିବା ଆବଶ୍ୟକ । ସଂଖ୍ୟା ଅବଶ୍ୟ ସବୁ ସମୟରେ ଗୁଣର ପରିଚାୟକ ନୁହେଁ; ତଥାପି ବହୁସଂଖ୍ୟକ ସମୀକ୍ଷକ ବାହାରି ପଡ଼ିଲେ, ତାରି ମଧ୍ୟରୁ ଉଚ୍ଚକୋଟୀର ସାହିତ୍ୟାଲୋଚନା ବିକଶିତ ହୋଇଉଠିବ । ଏହି ଦୃଷ୍ଟିରୁ ଖଣ୍ଡିଏ ନୂଆ ସମାଲୋଚନା ଗ୍ରନ୍ଥ ହାତକୁ ଆସିଲେ, ଅଥବା କୌଣସି ତରୁଣ ଲେଖକଙ୍କୁ ସାହିତ୍ୟ-ସମୀକ୍ଷା କର୍ମରେ ବ୍ୟାପୃତ ଥିବାର ଦେଖିଲେ, ପ୍ରାଣରେ ବଡ଼ ପୁଲକ ଜାତ ହୁଏ ଶ୍ରୀ ଖଗେନ୍ଦ୍ରନାଥ ମଲ୍ଲିକଙ୍କ ଲେଖନୀରୁ ଏହି ସାହିତ୍ୟାଲୋଚନାର ଗ୍ରନ୍ଥଟି ପାଇ ସେଥିସକାଶେ ମୁଁ ଅତ୍ୟନ୍ତ ଆନନ୍ଦିତ ହୋଇଛି ।

ଏ ଗ୍ରନ୍ଥରେ ତିନିଗୋଟି ସମାଲୋଚନା ପ୍ରବନ୍ଧ ସ୍ଥାନ ଲାଭ କରିଛି । 'ଗୀତ କାବ୍ୟ ଓ ଉପେନ୍ଦ୍ରଭଞ୍ଜ' ଏବଂ 'ଓଡ଼ିଆ ସମର ସାହିତ୍ୟ' ଦୁଇଟି ବିଶିଷ୍ଟ ଗାମ୍ଭୀର୍ଯ୍ୟପୂର୍ଣ୍ଣ ବିଷୟ । 'ପ୍ରାଚୀନ ପଦ୍ୟାଦର୍ଶ ଏକ ଦୃଷ୍ଟିପାତ' ଗୋଟିଏ ପୁସ୍ତକାଂଶର ଚଭିଉ । ଚଭିଉ ଗୋଟିକ ସମ୍ପର୍କରେ ମନ୍ତବ୍ୟ ନିଷ୍ପ୍ରୟୋଜନ । ଅନ୍ୟ ଯୋଡ଼ିକ ପ୍ରବନ୍ଧରେ ଶ୍ରୀ ମଲ୍ଲିକ ଯଦିଓ କିଛି ନୂଆ କଥା କହିନାହାନ୍ତି, ପୁରୁଣା କଥା-ଗୁଡ଼ିକୁ ନୂଆ ଭାବରେ ପ୍ରକାଶ କରି ପାରିଛନ୍ତି । ସେଇଠି ତାଙ୍କର ବାହାଦୁରୀ । ତିନିଟିଯାକ ପ୍ରବନ୍ଧର ଉପସଂହାରରେ ଗୋଟିଏ କଥା ସେ ତିନି ଥର ଉଚ୍ଚାରଣ କରିଛନ୍ତି—'ଶେଷରେ ଏତିକି କହିଲେ ଯଥେଷ୍ଟ ହେବ······" କିନ୍ତୁ ପ୍ରକୃତରେ ସେ ତିନିଟିଯାକ

ବିଷୟରେ ଯେତିକ କହିଛନ୍ତି, ସେତିକ କଣ ଯଥେଷ୍ଟ ? ପ୍ରତ୍ୟେକ ବିଷୟରେ ଆହୁରି ଅନେକ କଥା ବିଭିନ୍ନ ଦୃଷ୍ଟିକୋଣରୁ କହି ହେବ । ସମ୍ପୃକ୍ତ ବିଷୟରେ ଅଧିକ ଅଧ୍ୟୟନ ଓ ମନନ କଲେ, ସେ ଆପେ ଆପେ ହୃଦୟଙ୍ଗମ କରିପାରିବେ ଯେ—ଏତିକ କହିଲେ ଯଥେଷ୍ଟ ହେଉନାହିଁ ।

ଗୋଟିଏ କଥାରେ ମୁଁ ବେଶ୍ ତୃପ୍ତି ଲଭି କରିଛି ଯେ—ଶ୍ରୀ ମଲ୍ଲିକ ସାହିତ୍ୟ ସମାଲୋଚନାକୁ ମୋର ପୂର୍ବସୂଚନା ଅନୁଯାୟୀ ଏକ କଳା ହିସାବରେ ଗ୍ରହଣ କରିଛନ୍ତି । ତାଙ୍କ ସମାଲୋଚନାର ଭଙ୍ଗୀ ଓ ଭାଷାରୁ ତାହା ପ୍ରତିପାଦିତ ହେଉଛି । ନିଷ୍ଠାପର ଭାବରେ ଏ କ୍ଷେତ୍ରରେ ସାଧନା କରି ଚାଲିଲେ, କାବ୍ୟାଙ୍ଗ-କଳାରେ ସେ ବିଶେଷ କୃତିତ୍ୱ ଅର୍ଜନ କରିପାରିବେ ବୋଲି ମୋର ବିଶ୍ୱାସ । ଇତିପୂର୍ବରୁ ତାଙ୍କର ଆଉ ଖଣ୍ଡିଏ ସମୀକ୍ଷା ଗ୍ରନ୍ଥ 'ଧର୍ମ ଓ ସାହିତ୍ୟ' (୧୯୭୭) ପ୍ରକାଶ ପାଇଛି । କିନ୍ତୁ ସେ ଯଦି ପ୍ରକୃତ ସାଧକ, ତାହାହେଲେ ମୋର ଆଶା—ଏହି ସୀମାବଦ୍ଧ ସିଦ୍ଧିରେ ସେ ସନ୍ତୁଷ୍ଟ ହୋଇ ରହିବେ ନାହିଁ । ଆମର ଏ ହତଭାଗା ଦେଶରେ ବହୁ ଶକ୍ତିଧର ସାଧକ ଅତ୍ୟନ୍ତ ସୀମାବଦ୍ଧ ସିଦ୍ଧିରେ ବେଶ୍ ସନ୍ତୁଷ୍ଟ ହୋଇ ରହି ଯାଉଥିବାର ଦେଖାଯାଉଛି । ଫଳରେ ଜାତିପ୍ରତି କ୍ଷତି ଅବଧାରିତ ହୋଇ ଉଠୁଛି । ଶ୍ରୀ ମଲ୍ଲିକ ନବ ନବ ପ୍ରଚେଷ୍ଟା ଓ ଯୋଜନା ଦେଇ ସମୀକ୍ଷା-କର୍ମରେ ବରାବର ଅଗ୍ରସର ହୁଅନ୍ତୁ ଏବଂ ସାଧମତେ ଆମର କାବ୍ୟାଙ୍ଗକଳାକୁ ପରିପୁଷ୍ଟ କରନ୍ତୁ—ମୋର ଏତିକ କାମନା !

**ଡକ୍ଟର କୃଷ୍ଣଚରଣ ବେହେରା**

୧ । ୭ । ୭୭

## ଦୁଇ ପଦ

ପରୀକ୍ଷା ପରେ ଅବସର ସମୟ କଟାଇବା ପାଇଁ କେତେ-ଗୁଡ଼ିଏ ପୁସ୍ତକ ଅଧ୍ୟୟନ କରିଥିଲି । ସେ ପୁସ୍ତକ ଗୁଡ଼ିକରୁ ସାରମର୍ମ ନେଇ ଏଥିରେ ଥିବା ତିନୋଟି ପ୍ରବନ୍ଧ ଲେଖିଛି । ଏ ଗୁଡ଼ିକ ପାଠକ ତଥା ଜ୍ଞାନଜିଜ୍ଞାସୁ ବ୍ୟକ୍ତିମାନଙ୍କ ଦ୍ୱାରା ଆଦୃତ ହେଲେ ଶ୍ରମ ସାର୍ଥକ ହେବ ।

ରେଭେନ୍‌ସା କଲେଜର ଓଡ଼ିଆ ଅଧ୍ୟାପକ ତଥା ମୋର ପୂଜ୍ୟ ଗୁରୁଦେବ ଡକ୍ଟର କୃଷ୍ଣଚରଣ ବେହେରା ପୁସ୍ତକଟି ଆମୂଳଚୂଳ ପାଠ କରି ନିଜର ସୁଚିନ୍ତିତ ଅଭିମତ ପ୍ରଦାନ କରିଥିବାରୁ ତାଙ୍କୁ ଗଭୀର କୃତଜ୍ଞତା ଜଣାଉଛି ।

ବିନୀତ

**ଲେଖକ**

# ସୂଚୀପତ୍ର

# ରୀତିକାବ୍ୟ ଓ ଉପେନ୍ଦ୍ର ଭଞ୍ଜ

ସମଗ୍ର ଭାରତବର୍ଷକୁ ଯଦି ଗୋଟିଏ ପରିବାର ବୋଲି ଧରିଯାଏ, ତେବେ ସ୍ପଷ୍ଟତଃ ଦେଖିବାକୁ ମିଳେ ଯେ ପୂର୍ବେ ସେ ପରିବାରର ଆଚାର ବ୍ୟବହାର ଥିଲା ବୈଦିକ, ତାର ସାହିତ୍ୟ ଥିଲା ବେଦ ଏବଂ ବେଦ ଥିଲା ଅପୌରୁଷେୟ—ଅର୍ଥାତ୍ ଯାହା କୌଣସି ପୁରୁଷ ଦ୍ୱାରା ଲେଖା ହୋଇ ନ ଥିଲା । ତେଣୁ ତାର ଧର୍ମ ଥିଲା ସନାତନ ।

ସେହି ସନାତନ ହିନ୍ଦୁଧର୍ମର ଶ୍ରେଷ୍ଠ ଗ୍ରନ୍ଥ 'ବେଦ'ହିଁ—ସମଗ୍ର ଆର୍ଯ୍ୟମାନଙ୍କର ଧର୍ମ, ସାହିତ୍ୟ, ଆଚାର ଓ ବ୍ୟବହାର ଇତ୍ୟାଦିର ଯେ ଆଦି ଉତ୍ସ ଏହା ଅସ୍ୱୀକାର କରିଯାଇ ନ ପାରେ । କାଳ-ଚକ୍ରର ଆବର୍ତ୍ତନରେ ମାନବର ଚିନ୍ତା ଓ ଚେତନାର ପରିବର୍ତ୍ତନ ଅବଶ୍ୟମ୍ଭାବୀ । ଫଳତଃ ସାହିତ୍ୟ ସ୍ରୋତସ୍ୱିନୀ ଉକ୍ତ ବେଦ ବେଦାନ୍ତ ପଥ ଦେଇ ଯେଉଁ ନିର୍ଦ୍ଦିଷ୍ଟ ସ୍ଥାନରେ ସ୍ଥିର, ମନ୍ଥର ତଥା ଗୋଟିଏ ଶୃଙ୍ଖଳିତ ଅବସ୍ଥାରେ ବିରାଟ ହ୍ରଦ ସୃଷ୍ଟି କରିଥିଲା—ତାହା ହେଉଛି ସଂସ୍କୃତ ସାହିତ୍ୟ । ସେ ହ୍ରଦ କେବଳ ବୃହତ୍ ନ ଥିଲା—

ତାହା ସୌନ୍ଦର୍ଯ୍ୟବିଭୂଷିତା, ଅପରୂପମୟୀ ଓ ବର୍ଣ୍ଣବୈଚିତ୍ର୍ୟରେ ବିମଣ୍ଡିତା ହୋଇଥିଲା, ଯାହାକି ଗୋଟାଏ ବିରାଟ ଜାତିର ଅତୀତ, ବର୍ତ୍ତମାନ ଏବଂ ଭବିଷ୍ୟତର ସଙ୍ଗମସ୍ଥଳରେ ଧ୍ରୁବତାରା ସଦୃଶ ହୋଇଥିଲା ପ୍ରତିଭାତ ଏବଂ ତାହାହିଁ ବିଶ୍ୱଦରବାରରେ ଭାରତୀୟ ସମାଜର ପରିଚୟ ।

ଯେତେବେଳେ କାବ୍ୟ କବିତାର ସ୍ୱରୂପ କିପରି ଥିଲା, ସେ ସମ୍ପର୍କରେ ବୈୟାକରଣିକମାନେ ଆଙ୍ଗୀକ ଦୃଷ୍ଟିରୁ ଭିନ୍ନ ଭିନ୍ନ ମତ ଉପସ୍ଥାପନ କରିଛନ୍ତି । କେତେକ କହୁଥିଲେ, "ଧ୍ୱନ୍ୟାତ୍ମକ ବାକ୍ୟମ୍ କାବ୍ୟମ୍ ।" ଅନ୍ୟ କେତେକ କହୁଥିଲେ, 'ରସାତ୍ମକ ବାକ୍ୟମ୍ କାବ୍ୟମ୍ ।' ପୁଣି ଆଉ କେତେକ କହୁଥିଲେ "ରୀତିରାତ୍ମା କାବ୍ୟସ୍ୟ" ଅର୍ଥାତ୍ କାବ୍ୟର ଆତ୍ମାସ୍ୱରୂପରେ ଧ୍ୱନି, ରସ ଏବଂ ରୀତିକୁ ବିଭିନ୍ନ ଆଳଂକାରିକମାନେ ବିଭିନ୍ନ ସମୟରେ ପ୍ରାଧାନ୍ୟ ଆରୋପ କରିଛନ୍ତି ।

ଇଂରେଜ ସାହିତ୍ୟରେ ଯାହାକୁ କୁହାଯାଏ—"Style is the man."—ଏହି "Style"କୁ କେତେକ ରୀତି ବୋଲି ଗ୍ରହଣ କରିଥାନ୍ତି । ମାତ୍ର ଅଳଂକାର ଶାସ୍ତ୍ର ଦୃଷ୍ଟିରୁ 'Style' ରୀତି ନୁହେଁ । କାରଣ ଲେଖକ ନିଜ ରୁଚି ଅନୁସାରେ ବିଭିନ୍ନ ଅର୍ଥ ପ୍ରତିପାଦନ କରେ । ତେଣୁ ସେ ନିଜର ଅଧିଷ୍ଟ ଅର୍ଥରେ ଅଭିବ୍ୟକ୍ତି ନିମିତ୍ତ ଯେଉଁ ରୁଚିବିଶିଷ୍ଟ ପଦ ପ୍ରୟୋଗ କରେ, ତାହାକୁ ରୀତି କୁହାଯାଏ । ରୀତିର ବ୍ୟୁତ୍ପତ୍ତି ଲବ୍ଧ ଅର୍ଥ ହେଉଛି ମାର୍ଗ ପାନ୍ଥ, ବିଥି ଓ ପ୍ରସ୍ଥାନ—ଏସବୁ ରୀତିର ପର୍ଯ୍ୟାୟବାଚୀ ଶବ୍ଦ । ରୀତି ହେଉଛି ବ୍ୟକ୍ତିତ୍ୱର ପ୍ରତିନିଧି । ଆଚାର୍ଯ୍ୟ ଦଣ୍ଡୀଙ୍କ ମତରେ 'ରୀତି ଅନନ୍ତ ଏବଂ ସେମାନଙ୍କର ଭେଦ ଅତି ସୂକ୍ଷ୍ମ । ସାରଦାତନୟ ତାଙ୍କର

'ଭାବପ୍ରକାଶ' ଗ୍ରନ୍ଥରେ ଯଥାର୍ଥରେ କହିଛନ୍ତି—"ପୁରୁଷ ବଚନ ଅବାନ୍ତର, ଜାତି ଆଦି ଭେଦରେ ରୀତି ବସ୍ତୁତଃ ଅନନ୍ତ ।"

ବୈୟାକରଣିକମାନେ ବେଦରେ ରୀତିର ଆଦି ଉତ୍ସ ଅନ୍ତର୍ନିହିତ ବୋଲି ମନେକରନ୍ତି । ଋଗ୍‌ବେଦର "ରୀତିରୂପାମ୍' ପ୍ରୟୋଗରେ ଗୋଟିଏ ସ୍ଥାନରେ 'ଗମୟିତା (୭।୧୩।୧) ଓ ଅନ୍ୟତ୍ର 'ଗତି' (୯।୧୦୮।୧୦)—ଏହି ଅର୍ଥକୁ ଦୃଷ୍ଟି ରଖି ପରବର୍ତ୍ତୀ-କାଳରେ ଗତ୍ୟର୍ଥ 'ରୀ' ଧାତୁରୁ ଅଧିକରଣାର୍ଥେ 'କ୍ତିନ୍' ପ୍ରତ୍ୟୟ ହୋଇ 'ରୀୟନ୍ତେ ଗଚ୍ଛନ୍ତି ଅସ୍ୟାଂ ଗୁଣା ଇତି, ରୀୟତେ କ୍ଷରତ୍ୟସ୍ୟାଂ ବାଙ୍ମଧୁ ଧାରେତି ବା ରୀତିଃ' (କାବ୍ୟାଳଙ୍କାର ସୂତ୍ରାଣି କାମଧେନୁ ଟୀକା—ଚୌଖମ୍ବା ସଂସ୍କରଣ ପୃ—୧୫) କରି ମାର୍ଗ, ପନ୍ଥା, ପ୍ରସ୍ଥାନ ଆଦି ଅର୍ଥରେ କାବ୍ୟଶାସ୍ତ୍ରରେ ରୀତିର ପ୍ରଚଳନ ଓ ତଦନୁଯାୟୀ ବିସ୍ତାର ହୋଇଛି ।

ଭରତ ମୁନି ବିଭିନ୍ନ ଦେଶର ଆସ୍ତର ବ୍ୟବହାରକୁ ନେଇ ଚାରିପ୍ରକାର ପ୍ରବୃତ୍ତି—ଆବନ୍ତୀ, ଦାକ୍ଷିଣାତ୍ୟ, ଔଡ୍ର, ମାଗଧୀ ଓ ପାଞ୍ଚାଳୀରେ ବିଭିନ୍ନ ରୂପରେ ସମାବେଶ କରିଛନ୍ତି । ତାହାକୁ ଭିତ୍ତି କରି ଭାମହ ପ୍ରଥମେ ରୀତିଚର୍ଚ୍ଚା କରିଛନ୍ତି ଏବଂ ଅଷ୍ଟମ ଶତାବ୍ଦୀ ମଧ୍ୟଭାଗରେ ଆଚାର୍ଯ୍ୟ ବାମନ (୭୨୫-୭୭୫) 'ରୀତିରାତ୍ମା କାବ୍ୟସ୍ୟ' କହି ରୀତିତତ୍ତ୍ୱର ମହତ୍ତ୍ୱ ପ୍ରତିଷ୍ଠା କରିଛନ୍ତି । ତାଙ୍କ ମତରେ 'ବିଶିଷ୍ଟା ପଦ ରଚନା ରୀତି" ଅର୍ଥାତ୍ ରୀତି ହେଉଛି ପଦରଚନା, ଯା'ହା ବିଶିଷ୍ଟତା ସହ ସଂଯୁକ୍ତ । ଯଦି ପ୍ରଶ୍ନ ହୁଏ, ଏହି ବିଶେଷଟି କ'ଣ ? ତା'ହେଲେ ବାମନଙ୍କ ଭାଷାରେ—"ବିଶେଷୋଃ ଗୁଣାତ୍ମା" ଅର୍ଥାତ୍ ଓଜଃ, ପ୍ରସାଦାଦି ଗୁଣ ଯାହାର ସ୍ୱଭାବ, ତା'ହାକୁ

ବିଶେଷ କୁହାଯାଏ । ଅତଏବ ଆଚାର୍ଯ୍ୟ ବାମନଙ୍କ ରୀତିପ୍ରସ୍ଥାନର ପାର୍ଯ୍ୟନ୍ତିକ ପରିଣତି ହେଉଛି ସୌନ୍ଦର୍ଯ୍ୟଭିବ ।

ବାମନଙ୍କ ପରେ ନବମ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଆଚାର୍ଯ୍ୟ ରୁଦ୍ରଟ (ଖ୍ରୀ: ୮୨୫—୮୫୦) ପ୍ରଥମେ ବିଷୟ ତଥା ରସର ଔଚିତ୍ୟକୁ ନେଇ ରୀତିର ଭେଦ ପ୍ରଦର୍ଶନ କଲେ ଏବଂ ବାମନଙ୍କ ତିନୋଟି ରୀତି ସହିତ 'ଲାଟୀ' ନାମକ ଅନ୍ୟ ରୀତି ଯୋଗକଲେ । ସେ ସମାସକୁ ରୀତିର ମୂଳତତ୍ତ୍ୱ ଭାବେ ପ୍ରାଧାନ୍ୟ ଦେଲେ ।

ରୁଦ୍ରଟଙ୍କ ପରେ ନବମ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଆଚାର୍ଯ୍ୟ ଆନନ୍ଦବର୍ଦ୍ଧନ ଧ୍ୱନିବାଦ ପ୍ରତିଷ୍ଠା କଲେ । ରୁଦ୍ରଟ ସମାସର ଆଧାରରେ ଗଠିତ ଯେଉଁ ତତ୍ତ୍ୱକୁ ରୀତିସଂଜ୍ଞା ଦେଇଥିଲେ, ଆନନ୍ଦବର୍ଦ୍ଧନ ତାକୁ 'ସଂଘଟନା' ନାମରେ ଅଭିହିତ କଲେ । ରାଜଶେଖର (ଖ୍ରୀ: ୯୦୦) ସମାସ ସହିତ ଅନୁପ୍ରାସକୁ ରୀତିର ମୂଳତତ୍ତ୍ୱ ବୋଲି ସ୍ୱୀକାର କଲେ । ଭୋଜରାଜ (ଖ୍ରୀ: ୧୦୦୫—୧୦୫୪) ରାଜଶେଖରଙ୍କ ମତକୁ ଅନୁମୋଦନ କରି ସମାସ ଓ ଗୁଣକୁ ରୀତିର ମୂଳତତ୍ତ୍ୱ ରୂପରେ ସ୍ୱୀକାର କଲେ । ଅଗ୍ନିପୁରାଣକାର ଭୋଜରାଜାଙ୍କ ମତର ଆଧାରରେ ଅଗ୍ନିପୁରାଣର ୩୪୦ତମ ଅଧ୍ୟାୟରେ ରୀତି, ବୃତ୍ତି ଓ ପ୍ରବୃତ୍ତି ପ୍ରଭୃତିର ନିରୂପଣ କରିଗଲେ । ଶାରଦାତନୟ 'ଭାବପ୍ରକାଶନ'ରେ ଶିଙ୍ଗଭୂପାଳ 'ରସାର୍ଣ୍ଣବ-ସୁଧାକର'ରେ ଓ ବହୁରୂପମିଶ୍ର 'ଦଶରୂପକ ଟୀକା'ରେ ସେହି ପରମ୍ପରାର ଅନୁସରଣ କଲେ । ଶେଷରେ ଆଚାର୍ଯ୍ୟ କୁନ୍ତକ ଭୌଗଳିକ ନାମ ପରିହାର କରି ରୀତିକୁ ସୁକୁମାର, ବିଚିତ୍ର ଏବଂ ମଧ୍ୟମା ବା ମିଶ୍ର—ଏହିରୂପେ ତିନିପ୍ରକାର ଶ୍ରେଣୀବିଭାଗ କଲେ । ସୁକୁମାର ମାର୍ଗ ହେଲା ପ୍ରତିଭାଶାଳୀ କବି, ଯାହା ସ୍ୱତଃସ୍ଫୂର୍ତ୍ତ ପ୍ରେରଣା

ବଳରେ ସୃଷ୍ଟି କରିଥାଏ । ବିଚିତ୍ର ମାର୍ଗରେ କବି କଳ୍ପନା ବ୍ୟୁତ୍ପତ୍ତି ଅଭ୍ୟାସ ଦ୍ୱାରା କାବ୍ୟରଚନା କରିଥାଏ । ଏଥିରେ ଅଳଂକାରର ଆଧିକ୍ୟ ଏବଂ ଆଭ୍ୟନ୍ତରିକ ଗୁଣ ଅପେକ୍ଷା ବାହ୍ୟ ଚାକଚକ୍ୟ ପ୍ରତି ଅଧିକ ଦୃଷ୍ଟି ଦିଆଯାଇଥାଏ । ମଧ୍ୟମ ମାର୍ଗରେ କିନ୍ତୁ ସବୁର ସମନ୍ୱୟ ହୋଇଥାଏ ।

ବାମନଙ୍କ କଥିତ ଗୁଣ ମଧ୍ୟରେ ଉଦାରତା ଓ ସୁକୁମାରତାରେ ଲକ୍ଷଣା ଏବଂ ବ୍ୟଞ୍ଜନାର ବୀଜ ଅନ୍ତର୍ନିହିତ ଥିଲେ ମଧ୍ୟ ପରବର୍ତ୍ତୀ-କାଳରେ ଆଳଂକାରିକମାନେ ତାଙ୍କର ଦୃଷ୍ଟିକୋଣକୁ ଉଦାରତାର ସହିତ ବିଚାର କଲେ ନାହିଁ । ଫଳରେ ଧ୍ୱନିବାଦ ଓ ରସବାଦର ବ୍ୟାପକ ପ୍ରତିଷ୍ଠା ଓ ପ୍ରସାର ଭାରତରେ ରୀତିବାଦର ଅନ୍ତଃସୌନ୍ଦର୍ଯ୍ୟ ଗୌଣ ହୋଇପଡ଼ିଲା । ତେଣୁ ପ୍ରାନ୍ତୀୟ ପ୍ରାକୃତ ଭାଷାମାନଙ୍କରେ ରୀତିର ଆଙ୍ଗିକ ସୌନ୍ଦର୍ଯ୍ୟ ପ୍ରତି ପ୍ରାଧାନ୍ୟ ଦେଇ କାବ୍ୟମାନ ରଚିତ ହେଲା ।

ତେଣୁ ଏଠାରେ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ପଞ୍ଚଦଶ ଶତାବ୍ଦୀ ବେଳକୁ, ଯେତେବେଳେ ସଂସ୍କୃତ ସାହିତ୍ୟର ଅବକ୍ଷୟ ଘଟିଛି, ସେତେବେଳେ ପ୍ରତ୍ୟେକ ପ୍ରାନ୍ତୀୟ ସାହିତ୍ୟର ବିକାଶ ଘଟିଛି । ସଂସ୍କୃତ ସାହିତ୍ୟର ଅବକ୍ଷୟ ହେବାର ଆଉ ଗୋଟିଏ ପ୍ରଧାନ କାରଣ ହେଉଛି ଯେ, ୧୫୨୬ ଖ୍ରୀଷ୍ଟାବ୍ଦରେ ପ୍ରଥମ ପାଣିପଥ ଯୁଦ୍ଧ ପରେ ମୋଗଲ ଶକ୍ତିର ଗୋଟିଏ ପରେ ଗୋଟିଏ ରାଜ୍ୟଜୟ ତଥା ରାଜ୍ୟର ଅନ୍ତର୍ବିବାଦ ଭାରତରେ ଜାତୀୟ ସଂକଟ ସୃଷ୍ଟି କରିଛି । ଫଳରେ ପ୍ରାନ୍ତୀୟ ସାହିତ୍ୟ ସୃଷ୍ଟି ହେବାର ସୁଯୋଗ ଲାଭ କରି-ଥିଲେହେଁ ତାହା ମଧ୍ୟ ସେହି ସଂସ୍କୃତ ରୀତି ଚେତନାରେ ସମୃଦ୍ଧ ହୋଇଛି । ଏହି ରୀତି ଚେତନା କେବଳ ଓଡ଼ିଶାରେ ଯେ ଦେଖା-

ଦେଖଇଛୁ ତାହା ନୁହେଁ, ସମଗ୍ର ଭାରତରେ ମଧ୍ୟ ଦେଖାଦେଇଛି । ହିନ୍ଦୀରେ ଭକ୍ତିକାଳ (ଖ୍ରୀ: ୧୬୮୦—ଖ୍ରୀ: ୧୮୫୦) ମଧ୍ୟ ଦୀର୍ଘକାଳ ସ୍ଥାୟୀ ହୋଇଛି । ବଙ୍ଗଳାରେ ଭକ୍ତିର ପ୍ରଭାବ ଓଡ଼ିଆ ହିନ୍ଦୀ ସାହିତ୍ୟ ଭଳି ନ ହେଲେ ବି, କିଛି କମ୍ ନୁହେଁ । ଅସମୀୟା ସାହିତ୍ୟର ଏହି କାଳ 'ଉତ୍ତର-ବୈଷ୍ଣବ-ଯୁଗ' ରୂପେ ପରିଚିତ । ତହିଁରେ ମଧ୍ୟ ଭକ୍ତିପ୍ରାଧାନ୍ୟ ରହିଛି । ଉର୍ଦ୍ଦୁ ସାହିତ୍ୟରେ ଏହି ଭକ୍ତିକାଳ ହୋଇଛି ପ୍ରାଣପ୍ରତିଷ୍ଠାର ଯୁଗ । ମୋଟ ଉପରେ ଭକ୍ତିଜୁଆର ଅଳ୍ପ ଅଧିକେ ସବୁ ସାହିତ୍ୟକୁ ସ୍ପର୍ଶ କରିଛି । ଇଂରାଜୀ ସାହିତ୍ୟରେ ଊନବିଂଶ ଶତକର ପ୍ରଥମ ଭାଗର ଭକ୍ତିଧର୍ମୀ କବିମାନେ O'Shaughnessy ଙ୍କ ଭଳି କୋଧହୁଏ ଗାଇବାକୁ ଚାହିଁଛନ୍ତି—

"We are the music-makers
And we are the dreamers of dreams
Wandering by lone sea-breakers
And sitting by desolate streams
Wandering bylone sea breakers
World losers and world for sakers
On whom the pale moon gleams"

ଭାରତରେ ବିଭିନ୍ନ ରାଜ୍ୟରେ ପ୍ରାକୃତ ଭାଷାର ଯେଉଁ ସାହିତ୍ୟ ସୃଷ୍ଟି ହେଲା, ତାହା ସଂସ୍କୃତ ସାହିତ୍ୟର ଆଦର୍ଶରେ ଭକ୍ତିଅନୁପ୍ରାଣିତ ଆଳଂକାରିକ ତଥା ଗତାନୁଗତିକ ଭାବଧାରାରେ କିଛି ପର୍ଯ୍ୟବସିତ ହେବାକୁ ବାଧ୍ୟ ହେଲା । କାରଣ ପ୍ରାକୃତ ଭାଷାର ସାହିତ୍ୟକୁ ତତ୍କାଳୀନ ସମାଜର ସଂସ୍କୃତ ପଣ୍ଡିତଗଣ ନାସିକାକୁଞ୍ଚନ କରୁଥିଲେ । ଯାହାଫଳରେ ଦ୍ୱିଜକବି ସାରଳା ଦାସ ବିଚକ୍ଷଣ ପଣ୍ଡିତ ହୋଇଥିଲେହେଁ ପଣ୍ଡିତମାନଙ୍କ ଭୟରେ ନିଜର ସୃଷ୍ଟି-

ସମ୍ପଦକୁ ଦେବୀଙ୍କ ନାମରେ ଉତ୍ସର୍ଗ କରି ରକ୍ଷା ପାଇବାକୁ ପଶ୍ଚାତ୍‌ପଦ ହୋଇ ନାହାନ୍ତି—

"ଦେବୀ ଯାହା କହିବଦ୍ୟନ୍ତି ତାହା ମୁଁ ଲେଖଇ
ସର୍ବଦା ସାରଳା ଦାସ ମୂରୁଖ ଅଟଇ ।"

କିମ୍ବା ଜଗନ୍ନାଥ ଦାସଙ୍କ ଭାଗବତକୁ ତେଲି ଭାଗବତ କହିବା ଇତ୍ୟାଦିରୁ ସେ କାଳର ସମାଜର ପରିଚୟ ସୁସ୍ପଷ୍ଟ । ଏପରି କି ପ୍ରତ୍ୟେକ କାବ୍ୟ କବିତା ଲେଖି ପଣ୍ଡିତମାନଙ୍କ ନିକଟରେ ପରୀକ୍ଷା ଦେବାକୁ ପଡ଼ୁଥିଲା । ତେଣୁ ରୀତି ନିୟନ୍ତ୍ରିତ କାବ୍ୟକବିତା ଲେଖି-ବାକୁ ଯେ ସେ ସମୟରେ କବି ବାଧ୍ୟ ହୋଇଥିଲେ ତାହା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ମୋଟ ଉପରେ ଏଠାରେ ଏତିକି କହିଲେ ଯଥେଷ୍ଟ ହେବ ଯେ, ବହୁ ପୂର୍ବରୁ ସଂସ୍କୃତ ସାହିତ୍ୟ ଅଧିକ ରୀତିମୟ, ଆଦି-ରସାତ୍ମକ ଓ କ୍ଲିଷ୍ଟ ହେବା ସଂଗେ ସଂଗେ ଅଳଙ୍କାର ବୋଝରେ କେବଳ ଶବ୍ଦାଡ଼ମ୍ବର ହୋଇପଡ଼ିଲା । ତେଣୁ ମଧ୍ୟଯୁଗୀୟ ସାହିତ୍ୟ ଶୃଙ୍ଗାରଧର୍ମୀ, ଅଳଙ୍କାରମୟ ଓ ଶବ୍ଦାଡ଼ମ୍ବର ପୂର୍ଣ୍ଣ ହୋଇଥିଲା । ଓଡ଼ିଆ ରୀତିକାଳର ବିକାଶ ହୋଇଥିଲା ଖ୍ରୀ: ୧୫୫୦ରୁ ଖ୍ରୀ: ୧୮୫୦ ମଧ୍ୟରେ । ଏହା କେବଳ ତେଲଗୁ ସାହିତ୍ୟରେ ରୀତିକାଳ ପରି ଦୀର୍ଘସ୍ଥାୟୀ ହୋଇଗଲା ଏବଂ ଏହି ଓଡ଼ିଆ ରୀତିକାବ୍ୟକୁ ମର୍ଯ୍ୟାଦା ପ୍ରଦାନ କଲେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ । ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ-କବିତାକୁ ଯେପରି ଶବ୍ଦାଡ଼ମ୍ବର, ଶୃଙ୍ଗାରଚେତନା ଇତ୍ୟାଦି ଦୋଷରେ ଦୋଷୀ କରାଯାଇଥାଏ, ସେହିପରି ବଙ୍ଗଳାର ଗୋବିନ୍ଦ ଦାସ, ଆସାମର ରୁଦ୍ରସିଂହଇ (୧୬୯୬-୧୭୧୪), ହିନ୍ଦୀସାହିତ୍ୟରେ 'ପଦ୍ମାବତ୍', କବିଜାୟସୀ, 'ରାମଚନ୍ଦ୍ରିକା'ର କବି କେଶବ, ଉର୍ଦ୍ଦୁର

ଯୁଗର ସାହିତ୍ୟ, ଆନ୍ଧ୍ର କବିତାର 'ପିତା-ମହୁଡ଼ି', 'ଅଲ୍ଲସାନି-ପେଦାନ୍ନା', 'ନନ୍ଦୀତିମ୍ମାନ୍ନା' ଇତ୍ୟାଦିଙ୍କୁ ମଧ୍ୟ ଦେଖିହୁଏ ସାଦୃଶ୍ୟସୂତ୍ର କରାଯାଇପାରେ । ଇଂରାଜୀ ତଥା ଫରାସୀ ସାହିତ୍ୟରେ ମଧ୍ୟ ଏହି ସମୟରେ ଦୁର୍ବୋଧ ସାହିତ୍ୟ ସୃଷ୍ଟି ହୋଇଥିବାର ଲକ୍ଷ୍ୟ କରାଯାଏ । ଇଂରାଜୀ ରୀତିରେ ଲେଖା ହୋଇଥିବା ଅନୁପ୍ରାସ, ଯମକ ଓ ଶ୍ଳେଷ-ବିଶ୍ଳେଷ ଆଦିର ସ୍ୱରୂପ ସେ ସାହିତ୍ୟରେ ମଧ୍ୟ ଅଛି । ତେଣୁ ଓଡ଼ିଆ ରୀତିଯୁଗର ସ୍ରଷ୍ଟା କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଯେ ବିଶ୍ୱଚେତନାରୁ ଦୂରେଇ ଯାଇ ନ ଥିଲେ, ଏ କଥା ସ୍ପଷ୍ଟ ଭାବରେ କୁହାଯାଇପାରେ ।

ଏହି ପୃଷ୍ଠପୋଷିକା ଉପରେ କାବ୍ୟକବିତା ବିଚାର କଲେ ଜଣାଯାଏ ଯେ ସେତେବେଳକାର ରାଜନୀତିକ ଓ ସାମାଜିକ ଅବସ୍ଥାହିଁ ଏପରି ଦୁର୍ବୋଧ କାବ୍ୟ କବିତା ଲେଖିବା ପାଇଁ ଦାୟୀ ଥିଲା । ଓଡ଼ିଶାର ଇତିହାସ ଦେଖିଲେ ଜଣାଯାଏ, ୧୫୬୮ ଖ୍ରୀଷ୍ଟାବ୍ଦ ପୂର୍ବରୁ ଗଙ୍ଗବଂଶ ତଥା ସୂର୍ଯ୍ୟବଂଶର ରାଜତ୍ୱ ଥିଲା । ଏହି ସମୟ ମଧ୍ୟରେ ଶିକ୍ଷା, ସଂସ୍କୃତି, ଶିଳ୍ପ, ଭାସ୍କର୍ଯ୍ୟ ଆଦି ପ୍ରତ୍ୟେକ କ୍ଷେତ୍ରରେ ବିକାଶ ସାଧିତ ହୋଇଥିଲା । ଓଡ଼ିଶାର ପ୍ରଥମ ଜାତୀୟ ମହାକବି ସାରଳା-ଦାସ ଏହି ସମୟରେ ତାଙ୍କର ଲେଖନୀ ଚାଳନା କରିଥିଲେ । ୧୫୬୨ରେ ଉତ୍କଳରେ ରାମଚନ୍ଦ୍ରଦେବ ରାଜା ହେଲେ ଏବଂ ଉତ୍କଳ ପଠାଣମାନଙ୍କ ଅଧୀନକୁ ଚାଲିଗଲା । ୧୫୯୨ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ମୋଗଲମାନଙ୍କ ଅଧୀନରେ ରହିଲା । ମାତ୍ର ଆକବର ଉଦାରପନ୍ଥୀ ସମ୍ରାଟ ଥିବାରୁ ଉତ୍କଳର ସାମାଜିକ ଜୀବନରେ ବିପର୍ଯ୍ୟୟ ଦେଖାଗଲା ନାହିଁ । ୧୬୦୫ରେ ଆକବରଙ୍କ ମୃତ୍ୟୁ ପରେ ସାମାଜିକ ଜୀବନ ବିପର୍ଯ୍ୟସ୍ତ ହେଲା । ୧୫୬୮ ଖ୍ରୀ:ରେ ଗୋହିରୀଟିକିରି ଯୁଦ୍ଧରେ ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବଙ୍କର ମୃତ୍ୟୁ ଘଟିବା

ପରଠାରୁ ଗଜପତି ସାମ୍ରାଜ୍ୟର ପତନ ଘଟିଲା । ଏହାପରେ କ୍ଷୁଦ୍ର ସାମନ୍ତ ରାଜାମାନଙ୍କର ପୃଷ୍ଠପୋଷକତା ଲାଭ କରି କଳାର ବିକାଶହିଁ ସମରବିଳାସର ସ୍ଥାନ ଗ୍ରହଣ କଲା । ତେଣୁ ସାହିତ୍ୟ— ଜନସାଧାରଣଙ୍କଠାରୁ ଦୂରେଇଯାଇ ରାଜଦରବାର ମଧ୍ୟରେ ସୀମାବଦ୍ଧ ହେଲା । କାବ୍ୟସୁନ୍ଦରୀ ବିଭିନ୍ନ ଅଳଙ୍କାରରେ ମଣ୍ଡିତା ହେଲେ । ଯମକ, ଅନୁପ୍ରାସ, ଉପମା ଓ ଅଳଂକାର ଇତ୍ୟାଦିର ବହୁଳ ବ୍ୟବହାର ଦେଖା ଦେଲା । କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ଏହି ଗଜପତି ସାମ୍ରାଜ୍ୟର ବିଲୟ ପରେ ଅର୍ଥାତ୍ (୧୬୮୫-୧୭୨୫) ଖ୍ରୀଷ୍ଟାବ୍ଦ ମଧ୍ୟରେ ଆବିର୍ଭାବ । କବିସମ୍ରାଟଙ୍କ ପୂର୍ବରୁ ଦେଖାଯାଏ ସିଦ୍ଧକବି ସାରଳା ଦାସଙ୍କ ପ୍ରାକୃତ ଭାଷାରେ ରଚିତ ରାମାୟଣ, ମହାଭାରତ, ଚଣ୍ଡୀପୁରାଣ ଇତ୍ୟାଦି ପୌରାଣିକ ଗ୍ରନ୍ଥ । ପଞ୍ଚସଖା-ଯୁଗର କେତେକ ଭକ୍ତିରସାମୃତ ସାହିତ୍ୟ ତଥା ପ୍ରାକ୍ ରୀତିଯୁଗ (୧୫୫୦-୧୬୫୦) ମଧ୍ୟରେ କେତେକ ପୌରାଣିକ କାବ୍ୟ, କାଳ୍ପନିକ କାବ୍ୟ, ଚଉତିଶା, ଜଣାଣ, ପଦ୍ୟାବଳୀ ଇତ୍ୟାଦି । ତେଣୁ ଉପେନ୍ଦ୍ର ଭଞ୍ଜ ରୀତିନିୟନ୍ତ୍ରିତ କାବ୍ୟ ଲେଖିବା ପୂର୍ବରୁ ଓଡ଼ିଆ ସାହିତ୍ୟରେ ସର୍ବପ୍ରଥମେ ଅର୍ଜୁନ ଦାସଙ୍କ 'ରାମବିଭା' ଓ 'କଳ୍ପଲତା'ରେ ଏହି ରୀତିଚେତନା ଦେଖାଦେଇଛି । ଏହି ଚେତନା ପୁଣି ଶିଶୁଶଙ୍କର ଦାସ (ଉଷାଭିଳାଷ), କାର୍ତ୍ତିକ ଦାସ (ରୁକ୍ମିଣୀବିଭା), ନରସିଂହ ସେଣ (ପରିମଳା), ବନମାଳୀ ଦାସ (ଚଟ ଇଚ୍ଛାବତୀ), ଦେବଦୁର୍ଲ୍ଲଭ ଦାସ (ରହସ୍ୟମଞ୍ଜରୀ), ବିଷ୍ଣୁ ଦାସ (ପ୍ରେମାଲୋଚନା) ଓ ଧନଞ୍ଜୟ ଭଞ୍ଜ (ଇଚ୍ଛାବତୀ, ଅନଙ୍ଗରେଖା, ମଦନମଞ୍ଜରୀ ଓ ରଘୁନାଥ ବିଳାସ)ଙ୍କ ବାଟ ଦେଇ ଯାଇ ଯାଇ ଦୀନକୃଷ୍ଣ ଓ ଉପେନ୍ଦ୍ର ଭଞ୍ଜଙ୍କ ନିକଟରେ ସଂପୂର୍ଣ୍ଣରୂପେ ବିକାଶଲାଭ କରିଛି ।

ମଧ୍ୟଯୁଗର କାବ୍ୟ କବିତା ସଂସ୍କୃତାନୁସାରୀ ହୋଇଥିବାରୁ ସେ ସମୟର କାବ୍ୟକବିତା ଅଳଂକାରଶାସ୍ତ୍ର ନିର୍ଦ୍ଦେଶିତ ଗୌଡ଼ୀ, ବୈଦର୍ଭୀ, ପାଞ୍ଚାଳୀ ଓ ଲାଟୀ ପ୍ରଭୃତି ସମସ୍ତ ରୀତିଲକ୍ଷଣ ଦ୍ୱାରା ନିୟନ୍ତ୍ରିତ ହୋଇଥିଲା । ପୁନଶ୍ଚ 'ବିଶିଷ୍ଟପଦସଂଘଟନା ରୀତିଃ' ଯାହାକୁ ଅବଲମ୍ବନ କରି ତତ୍କାଳୀନ କାବ୍ୟକର୍ତ୍ତାଗଣ ସ୍ୱ ସ୍ୱ କାବ୍ୟ ପ୍ରଣୟନ ଦିଗରେ ବ୍ୟାପୃତ ଥିଲେ । ତେଣୁ କାବ୍ୟର ଆତ୍ମିକ ଦିଗ ଉପରେ କବିମାନେ ବିଶେଷ ଗୁରୁତ୍ୱ ନ ଦେଇ ଆଙ୍ଗୀକ ଉପରେ ଗୁରୁତ୍ୱ ଦେଉଥିଲେ ।

ଆତ୍ମିକ ଦିଗରୁ ଦେଖିଲେ ଆଲୋଚ୍ୟ ଯୁଗ ସାହିତ୍ୟର ବିଷୟବସ୍ତୁ ଉଭୟ ପୌରାଣିକ ଓ କାଳ୍ପନିକ ଭାବଧାରାରେ ପର୍ଯ୍ୟ-ବସିତ ଏବଂ କାଳ୍ପନିକ କାବ୍ୟରେ ପୌରାଣିକ ରୂପ ଦେବାରେ ଚେଷ୍ଟିତ ହୋଇଛି । ଏତଦ୍‌ଭିନ୍ନ କାଳ୍ପନିକ କାବ୍ୟର ବିଷୟବସ୍ତୁ ପ୍ରାୟ ଗତାନୁଗତିକ ଗୋଟିଏ ଗୁମ୍ଫରେ ଗଠିତ ହୋଇଛି । ପୂର୍ବ-ରାଗରେ ନାୟକ-ନାୟିକାର ଦର୍ଶନ (ଚିତ୍ରପଟ ସାହାଯ୍ୟରେ), ଦର୍ଶନ ପରେ ବିରହ, ବିରହ ପରେ ତୀର୍ଥକ୍ଷେତ୍ର ବା ମନ୍ଦିର ନିକଟରେ ସାକ୍ଷାତ୍ ଦର୍ଶନ, ଏହାପରେ ବିଚ୍ଛେଦ ଓ ବିବାହକାର୍ଯ୍ୟ ସମ୍ପନ୍ନ ହେତୁ ଆନନ୍ଦୋପଲବ୍ଧି ବର୍ଣ୍ଣନା, ତା'ପରେ ନାୟକର ବିଦେଶଗମନ ହେତୁ ବିଚ୍ଛେଦଜନିତ ବିରହଦଶା କଥନ, ବିଶେଷତଃ ବ୍ରହ୍ମଚାରୀ ବା ଦୈବାତଯୋଗେ ପୁନଃମିଳନ—ଏହାହିଁ ମଧ୍ୟଯୁଗୀୟ କାବ୍ୟଗୁଡିକର ବିଷୟବସ୍ତୁ ।

କାବ୍ୟର ଆଙ୍ଗୀକରେ ସଂସ୍କୃତ ଅଳଂକାରଶାସ୍ତ୍ର ନିର୍ଦ୍ଦେଶିତ ନବରସର ପ୍ରୟୋଗ ହେବା ଏକାନ୍ତ ଉଚିତ । ବିଶେଷରେ କାବ୍ୟରେ ସାଙ୍ଗୀତିକତା ରହିବା ମଧ୍ୟ ଆବଶ୍ୟକ । କାରଣ ସେତେବେଳେ

କାବ୍ୟକବିତା ଥିଲା ମୁଦ୍ରାଯନ୍ତ୍ର ଅଭାବରୁ ଆବୃତ୍ତିଧର୍ମୀ । ଫଳରେ ବିଭିନ୍ନ ଛନ୍ଦ ଓ ବୃନ୍ଦ, ରାଗ ଓ ରାଗିଣୀ, ତାଳ ଓ ବାଣୀ ଇତ୍ୟାଦିର ପ୍ରୟୋଗ ଫଳରେ କାବ୍ୟକବିତାକୁ ଆବୃତ୍ତି କରି ଶ୍ରୋତୃମଣ୍ଡଳୀଙ୍କୁ ଶୁଣାଯାଉଥିଲା । ତୃତୀୟରେ କାବ୍ୟ ଅଧ୍ୟୟନ ଫଳରେ ଧର୍ମ, ଅର୍ଥ, କାମ, ମୋକ୍ଷ—ଏହି ଚତୁଃବର୍ଗ ଫଳପ୍ରାପ୍ତି ହୁଏ ବୋଲି ତତ୍ତ୍ୱବିତ୍‌-ମାନେ ମତପ୍ରକାଶ କରୁଥିଲେ । ତେଣୁ କାବ୍ୟ ମଧ୍ୟରେ ଭଗବତ୍‌ ଚିନ୍ତା ପାଇଁ ଏହି ଧର୍ମୀୟ ଭାବନାର ମାତ୍ର ଉଦ୍ଦିଷ୍ଟ ଥିଲା । ଚତୁର୍ଥରେ ଚତୁଃବର୍ଗ ଫଳ ମଧ୍ୟରେ 'ଶୃଙ୍ଗାର' ମୂଳରେ ସଂସାରର ସୃଷ୍ଟି-ପ୍ରକ୍ରିୟା ନିହିତ ଥିବାରୁ ରସିକରାଜ ଭୋଜରାଜ କବି ଶୃଙ୍ଗାରୀ-ଭାବାପନ୍ନ ହେବା ସର୍ବାଦୌ ବାଞ୍ଛନୀୟ ବୋଲି ମତ ଦେଇଥିଲେ । ତାଙ୍କ ମତରେ—

"ଶୃଙ୍ଗାରୀଶ୍ଚେତ୍‌ କବିଃ କାବ୍ୟେ ଜାତଂ ରସମୟଂ ଜଗତ ।"

ଏତଦ୍‌ଭିନ୍ନ କାବ୍ୟ ରମଣୀଙ୍କର କଳେବର ମଣ୍ଡନ ଲାଗି ବିଭିନ୍ନ ଉପମା ଓ ଅଳଂକାର; ଯଥା.—ଉପମା, ରୂପକ, ଶ୍ଳେଷ, ଯମକ, ଅନୁପ୍ରାସ, ଦତ୍ତାକ୍ଷର, ଚ୍ୟୁତାକ୍ଷର, ଦତ୍ତଚ୍ୟୁତାକ୍ଷର, ସର୍ବନ୍ଦେଷ୍ଟକ, ନାବେଷ୍ଟକ, ଲୋମ, ବିଲୋମ, ବିବୋଧାଭାସ ପ୍ରଭୃତିର ଆଶ୍ରୟ ଆଲୋଚ୍ୟ ଯୁଗସାହିତ୍ୟ ଗୋଷ୍ଠୀଙ୍କର ପ୍ରଧାନ ଅଭିଳାଷ ଥିଲା । ଉପର୍ଯ୍ୟୁକ୍ତ ସମସ୍ତ ବିଭବାଦ ପ୍ରାକ୍‌ ରୀତିଯୁଗୀୟ କବିଙ୍କର ଭିତ୍ତି ଉପରେ କବିସମ୍ରାଟ ସୁନ୍ଦର ସୌଧ ନିର୍ମାଣ କରିଗଲେ । ଏହାବ୍ୟତୀତ କବିସମ୍ରାଟଙ୍କ ପୂର୍ବରୁ ଖ୍ରୀ: ୧୫୧୦ ରେ ଚୈତନ୍ୟଦେବ ଓଡ଼ିଶାକୁ ଆସିଥିଲେ । ଫଳରେ ଓଡ଼ିଆ ସାହିତ୍ୟରେ ଦୁଇଟି ଗୋଷ୍ଠୀର ଆବିର୍ଭାବ ଘଟିଥିଲା । ଗୋଟିଏ ଉତ୍କଳୀୟ ବୈଷ୍ଣବ ଏବଂ ଅନ୍ୟଟି ଗୌଡ଼ୀୟ ବୈଷ୍ଣବ । ଉତ୍କଳୀୟ ବୈଷ୍ଣବ-

ମାନେ ଜଗନ୍ନାଥଙ୍କୁ ଆଧାର କରି ଜ୍ଞାନମିଶ୍ରା ଭକ୍ତିର ଉପାସନା କଲାବେଳେ ଚୈତନ୍ୟପନ୍ଥୀମାନେ କୃଷ୍ଣଙ୍କୁ ଆଧାର କରି ସୁଧାଭକ୍ତିର ଉପାସନା କଲେ । ଫଳରେ ମଧ୍ୟଯୁଗୀୟ କାବ୍ୟସାହିତ୍ୟରେ ସ୍ୱକୀୟା, ପରକୀୟା ଭେଦରେ ଦୁଇପ୍ରକାର ପ୍ରୀତିର ନିର୍ଯ୍ୟାସ ସୃଷ୍ଟି ହେଲା ।

ଏହି ପର୍ଯ୍ୟାୟରେ ଆଲୋଚନା କଲେ ଦେଖାଯାଏ, କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଲେଖନୀର ପ୍ରେରଣା ସଂସ୍କୃତ ସାହିତ୍ୟାନୁସାରୀ ହୋଇଥିଲେହେଁ ପିତାମହ ଧନଞ୍ଜୟ ଭଞ୍ଜ ଥିଲେ ତାଙ୍କର ଦିଗ୍‌ଦର୍ଶକ ଓ କବିଜୀବନର ଆଦର୍ଶ । ପରାଧୀନ ଉତ୍କଳରେ ଯେତେବେଳେ ରାଜନୀତିକ ଜଡ଼ତା ଦେଖାଦେଇଛି, ସେତେବେଳେ ସାମାଜିକ ଜୀବନରେ କାବ୍ୟିକ ନବସ୍ପନ୍ଦନର ସୃଷ୍ଟି ହୋଇଛି । ଏପରିକି ମୋଗଲବନ୍ଦୀ ଅଞ୍ଚଳରେ ରାଜାମାନେ ଘନ ଘନ ଯୁଦ୍ଧରେ ବ୍ୟାପୃତ ଥିବାବେଳେ ଗଡ଼ଜାତ ଅଞ୍ଚଳରେ କବିମାନେ ନୂତନ ନୂତନ କାବ୍ୟକବିତା ରଚନାରେ ନିଜକୁ ନିମଜ୍ଜିତ କରିଥିଲେ ।

ଭଞ୍ଜଙ୍କର ସମସ୍ତ କାବ୍ୟକବିତା; ଯଥା:—ବୈଦେହୀଶବିଳାସ, କୋଟିବ୍ରହ୍ମାଣ୍ଡସୁନ୍ଦରୀ, ରସିକ ହାରାବଳୀ, ପ୍ରେମସୁଧାନିଧି, ରସଲେଖା, ଲାବଣ୍ୟବତୀ, ଯମକରାଜ ଚଉତିଶା, କଳାଣ ଇତ୍ୟାଦି ପର୍ଯ୍ୟାଲୋଚନା କଲେ କବିଙ୍କର ବହୁ ଶାସ୍ତ୍ରଦର୍ଶିତାର ପରିଚୟ ମିଳେ । ଏଠାରେ ଗୋଟିଏ କଥା ସୂଚାଇଦେଲେ ଅପ୍ରାସଙ୍ଗିକ ହେବ ନାହିଁ ଯେ, କବି ତାଙ୍କର କାବ୍ୟକବିତାରେ କାଳିଦାସଙ୍କ ଦ୍ୱାରା ପ୍ରଭାବିତ ହୋଇ ନ ଥିଲେ । ଯଦିଓ କାଳିଦାସଙ୍କ ପ୍ରତିଭାକୁ କବି ଅକୁଣ୍ଠିତ ଚିତ୍ତରେ ଗ୍ରହଣ କରି ନେଇଛନ୍ତି । ବୈଦେହୀଶ ବିଳାସର ପ୍ରଥମ ଛାନ୍ଦରେ କବି ଲେଖିଛନ୍ତି—

"ବାଲ୍ମୀକି, ବ୍ୟାସକବି ପନ୍ଥିରେ ମହାକାବ୍ୟକେ ପୁରାଣ କରେ
ମହାନାଟକ ବାତସୂତରେ ହେଲେ ରଚିତା ଯେ
ଭବିଲେ କାବ୍ୟ ଯେ କାଳିଦାସେ ଚମ୍ପୂ ରଚନା ଭୋଜନରେଶେ
କୃପାସିନ୍ଧୁ ଏ ଗୀତ ପ୍ରକାଶେ ଗ୍ରନ୍ଥିଲ ଚିଂତା ଯେ
ବିବେକଙ୍କି ଉଦୟ ଏମନ୍ତ ଧ୍ୟାୟି ଯେ
ବ୍ୟୋମେ ତାରକା ଯେବେ ଝଲକୁଥାଇ ଯେ
ଭଗବତରେ ଜ୍ୟୋତିରଙ୍ଗଣଗଣ ଜ୍ୟୋତିକ ଦେଖାନ୍ତି ପୁଣ
ସୁଜନେ ସାବଧାନରେ ଶୁଣ ଗ୍ରନ୍ଥ ରଚଇ ଯେ ।"

ଏଥିପାଇଁ ମଧ୍ୟ ସାମାଜିକ କାରଣ ବିଦ୍ୟମାନ ଥିଲା । ଭାସ ଓ କାଳିଦାସ ପ୍ରଭୃତି ସଂସ୍କୃତ କବିଙ୍କର କାବ୍ୟ ଓ ନାଟକରେ ରଚନାର ସ୍ୱାଭାବିକତା ଓ କବିତ୍ୱର ଯେଉଁ ନୈସର୍ଗିକ ପରିସ୍ଫୁର୍ତ୍ତି ଘଟିଥିଲା, ତାହା ପରବର୍ତ୍ତୀ କାଳରେ ଭାରବୀ, ମାଘ, ଶ୍ରୀହର୍ଷ ପ୍ରଭୃତି ଗ୍ରହଣ କଲେ ନାହିଁ । ରଚନାର ସ୍ୱାଭାବିକତା ସ୍ଥାନରେ ଦେଖାଦେଲା ଶିଳ୍ପଗତ କୃତ୍ରିମତା । ଏହି କଳାଗତ କୃତ୍ରିମତାକୁ ପରବର୍ତ୍ତୀ ପଣ୍ଡିତ ଓ ଆଳଂକାରିକମାନେ କବିତ୍ୱର ଉଚ୍ଚତମ ମାନଦଣ୍ଡ ବୋଲି ଗ୍ରହଣ କରି କାଳିଦାସଙ୍କ ସୃଷ୍ଟିକୁ ଅତି ସାଧାରଣ ମନେକଲେ । ତେଣୁ କବିସମ୍ରାଟ ଶ୍ରୀହର୍ଷଙ୍କ ଅର୍ଥଗାମ୍ଭୀର୍ଯ୍ୟ, ବିଚିତ୍ର ଆଳଂକାରିକ କଳ୍ପନା ଏବଂ ଭୋଜରାଜଙ୍କ ଶବ୍ଦାଳଙ୍କାର ପର୍ଯ୍ୟାପ୍ତ (ବିଶେଷତଃ ଯମକ) କବିଙ୍କ ଦ୍ୱାରା ପଦେ ପଦେ ଅନୁସୃତ ହେବା ଏକାନ୍ତ ସ୍ୱାଭାବିକ ଥିଲା । କୋଟିବ୍ରହ୍ମାଣ୍ଡସୁନ୍ଦରୀରେ—

"ଯେଉଁ ନୈଷଧ ପରାୟେ
ଉପେନ୍ଦ୍ର କହେ ବୁଧେ ପ୍ରମୋଦ କରଏ ।

କଠୋପନିଷଦ୍‌ରେ ଆତ୍ମା ଓ ପରମାତ୍ମା ସଂପର୍କ ପ୍ରସଙ୍ଗରେ କୁହାଯାଇଛି—"ଯୋ ଯଦଗ୍ଛନ୍ତି ତସ୍ୟଚତ୍ର ।" ଉପେନ୍ଦ୍ର, ଅନୁରୂପ ସ୍ୱର ତୋଳିଛନ୍ତି ତାଙ୍କର ପ୍ରେମିକପ୍ରେମିକାଙ୍କ ପାଇଁ 'ପ୍ରେମସୁଧାନିଧି' କାବ୍ୟରେ—

"ଦୂରେ ଥିଲେ ପାଶେ ଅଛୁ ଥିବୁ ଏହା ଘେନି
କେତେ ଦୂରେ ଚନ୍ଦ୍ର କେତେ ଦୂରେ କୁମୁଦିନୀ
ପ୍ରୀତି ଅଭେଦ ତାଙ୍କର
ଯେତେ ଦୂରେ ଥିଲେ ଯେ ଯାହାର ସେ ତାହାର ।"

ବସନ୍ତକାଳରେ ମଲ୍ଲୀଫୁଲ ଦେଖି ବିରହିଣୀ ମନରେ ଯେଉଁ ଭାବନା ଜାତ ହୋଇଛି, ତାହା ଜୟଦେବ ଓ ଭଞ୍ଜଙ୍କ କାବ୍ୟରେ ପ୍ରାୟତଃ ଏକା ରୂପ ନେଇଛି—

"ଦରବିଦଳିତ ମଲ୍ଲୀ ବଲ୍ଲି ଚଞ୍ଚୁ ପରାଗ –
ପ୍ରକଟିତ ପଟବାସୈର୍ବାସୟନ୍ କାନନାନି ।
ଇହହି ଦହତି ଚେତଃ କେତକୀଗନ୍ଧବନ୍ଧୁଃ
ପ୍ରସରଦସମବାଣପ୍ରାଣବଦ୍ ଗନ୍ଧବାହ ।"
(ଗୀତଗୋବିନ୍ଦ)

"ଯେତେକେ ସୁଧୀର ମନ୍ଦିନା ହୋଇଥିବ
ମଧୁମାସେ ଯେବେ ବିରହିଣୀ ହେବ
ଦେଖି ମଲ୍ଲୀ, ମଲ୍ଲ ବୋଲି ଚମକିବ ।"
(ଲାବଣ୍ୟବତୀ)

ଆକାଶରେ ଘନକୃଷ୍ଣ ମେଘକୁ ଦେଖି ପ୍ରକୃତି ଯେତେବେଳେ ଉନ୍ମତ୍ତ ହୋଇ ଉଠିଥାଏ, ବିରହୀ-ବିରହିଣୀଙ୍କ ଭାବନା ଭର୍ତ୍ତୃହରି ଓ ଭଞ୍ଜଙ୍କୁ ବି ଏକ କରିଦିଏ ।

"ବିୟଦୁ ପଚିତମେଘଂ ଭୂମୟଃ କନ୍ଦଳିନ୍ୟୋ
ନବକୁଟଜ କଦମ୍ବାମୋଦିନୀ ଗନ୍ଧବାହାଃ
ଶିଖିକୁଳ କଳକେକାରାବରମ୍ୟାବନାନ୍ତା
ସୁଖିନମସୁଖିନଂ ବାସର୍ବମୁତ୍କଣ୍ଠୟନ୍ତି । (ଶୃଙ୍ଗାରଶତକ)

ନାଚେ ବରହୀ ରଙ୍ଗ                ନଦ୍ରେ ଭେକହିଁ ବଙ୍ଗ
କାମୀପ୍ରଳପୁ ବଙ୍ଗ ବଙ୍ଗ
ଶୁଣି ନ ସଙ୍ଗ ସହୀ                ଚରବ ମହୀ ମଙ୍ଗ-
ଳାକୁ ଯେ ଥାଙ୍ଗ ନାହିଁ ନାହିଁ
ହେ ଜଳଧର !
କଦମ୍ବ ଗନ୍ଧ ବହି ବହି
ବାତ ଥିବ ମୋଦନ୍ତି ବଙ୍ଗ
ମୋ ପଥ ରୁହିଁ ରୁହିଁ                ଥିବସୁମୁଣ୍ଡ ମୁହିଁ
ପାପୀ, ଦହେ ଅଦେହୀ ଦେହୀ ।" (ରସିକ ହାରବଳୀ)

କାମୋନ୍ମାଦିନୀ ବହ୍ନିଲତା ନାମ୍ନୀ ସୁନ୍ଦର ଶଯ୍ୟା ତ୍ୟାଗ କରି ଭୂମିଶଯ୍ୟାକୁ ବାଛିବା ସ୍ଥଳରେ କାଳିଦାସ ଓ ଭଞ୍ଜ ଏକମତ ।

"ଅଥ ସାପୁନରେବ ବିହ୍ୱଳା ବସୁଧା ଲିଙ୍ଗନ ଧୂସରସ୍ତନୀ
ବିଲାପବିକୀର୍ଣ୍ଣମୂର୍ଦ୍ଧଜା ସମଦୁଃଖାମିବ କୁର୍ବତୀ ସ୍ଥଳୀମ୍ ।"
(କୁମାରସମ୍ଭବ)

ଏମନ୍ତ କାଳରେ ନୀରଜାନନୀ ନବବରଜା
ପଲଙ୍କେ ପଲଙ୍କେ ନ ରହି କଲା ସେ ମହୀଶଯ୍ୟା ।"
(କୋଟିବ୍ରହ୍ମାଣ୍ଡସୁନ୍ଦରୀ)

ନୈଷଧୀୟ ଚରିତମ୍‌ର ଦମୟନ୍ତୀ ଏବଂ ସୁଭଦ୍ରା ପରିଣୟରେ ସୁଭଦ୍ରାଙ୍କର ଅଙ୍ଗବିଶେଷରେ ଉପମା ଉଭୟ କାବ୍ୟରେ ବହୁ-

ସ୍ଥଳରେ ସମାନତା ଲାଭ କରନ୍ତି । ଏପରି କି ମନେହୁଏ, ଭଞ୍ଜ 'ନୈଷଧୀୟ ଚରିତମ୍'ର ସ୍ରଷ୍ଟା ଶ୍ରୀହର୍ଷଙ୍କର ଏକ ଓଡ଼ିଆ ସଂସ୍କରଣ ଥିଲେ । ବାତ୍ସ୍ୟାୟନଙ୍କ ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣକୁ ଉପେନ୍ଦ୍ର ତାଙ୍କ କାବ୍ୟମାନଙ୍କରେ ବ୍ୟବହାର କରିପାରି ନାହାନ୍ତି । ଯଥା :— ସୂତ୍ରରେ ନଖକ୍ଷତର ସ୍ଥାନ ନିର୍ଦ୍ଦେଶ କରି କୁହାଯାଇଛି—

କକ୍ଷୌ ସ୍ତନୌ ଗଳଃ ପୃଷ୍ଠଂ ଜଘନମୂରୁଚ ସ୍ଥାନାନି ।"

ଉପେନ୍ଦ୍ରଙ୍କ ଲାବଣ୍ୟବତୀରେ—

"ସ୍ତନଂସ କକ୍ଷମୂଳେ ଚିପିଦେଇ ନଖମୂନ
କୁଚୁଟରେ ସମ୍ପୃଟରେ କଲା ରସନା ଖଳନ
ଉରଜ ମଧ୍ୟ କରଜ ଆଣିଲା ଚଳାଇ
ନାଭିତଳେ ଦେଲା କନିଷ୍ଠାଙ୍ଗୁଳିକି ବୁଲାଇ ।"

ଉପେନ୍ଦ୍ରଙ୍କ ଏପରି ବର୍ଣ୍ଣନାରେ ତାଙ୍କୁ କେତେକ ଅଶ୍ଳୀଳତା ଦେଖିବାରେ ଦୋଷୀ ସାବ୍ୟସ୍ତ କରିଥାନ୍ତି । ମାତ୍ର ତାଙ୍କ ପୂର୍ବରୁ ଯେ ଏହାର ବହୁଳ ଉଦାହରଣ ଅଛି—ତାହା କହିବା ନିଷ୍ପ୍ରୟୋଜନ । ଏଠାରେ ରୀତିଯୁଗର ପ୍ରାଥମିକ କାଳର ବର୍ଣ୍ଣନାର ଗୋଟିଏ ଉଦାହରଣ ଦିଆଯାଇପାରେ—

"ହୁଙ୍କାର ଶବ୍ଦକାଳୀ ଗ୍ରୁଢ଼େ ଘନ ଘନ
ମଦନ ମୋହରେ ପଡ଼ି ବୁଡ଼ିଲାଟି ଜ୍ଞାନ
ଅପ୍ରମିତ ଶ୍ରମ କରି ମୁଖ୍ୟ ଝାଳ ଜାତ
କୁମରି ହୃଦୟେ ଆସି ପଡ଼ିଲା ଭୂରିତ ।
ମନ୍ମଥକେତୁ ହୃଦରେ ଯେ କାମଅଗ୍ନି ଥିଲା
ସ୍ୱେଦ ପଡ଼ିବା ମାତ୍ରକେ ତେବେଗେ ଜଳଗଲା ।

ରୋମାଞ୍ଚିତ ମୁଖ ଖର ଶଶୁ ଆସ ବାଳା
ହୁଂହୁଂ ହୁଂହୁଂ ବୋଲି ବକ୍ଷସ୍ଥଳରେ ପଡ଼ିଲା । ଇତ୍ୟାଦି...।

ପ୍ରାକୃତ ଭାଷାରେ ଲିଖିତ ରାଜଶେଖରଙ୍କ କର୍ପୂରମଞ୍ଜରୀରେ 'ମଳୟ ପବନ ଲଙ୍କା ଗିରି କଟିତଟରେ ପହଞ୍ଚିଲା ବେଳକୁ ସମ୍ଭୋଗରେ ଅବଶ ହୋଇଥିବା ନାଗ ରମଣୀମାନେ ତାକୁ ଗ୍ରାସ କରିବା' ଇତ୍ୟାଦିର ଚିତ୍ର ଭଞ୍ଜଙ୍କର 'ରସଲେଖା'ର ୯ର୍ଥ ଛାନ୍ଦରେ ଦେଖାଯାଏ । ଏସବୁ ବ୍ୟତୀତ ଧନଞ୍ଜୟ ଭଞ୍ଜଙ୍କର 'ଇଚ୍ଛାବତୀ'ରେ ବରଷାକାଳ ରାତ୍ରିର ବର୍ଣ୍ଣନା ସଙ୍ଗୀତ ଜୟଦେବରେ ପ୍ରଭାବ ପଡ଼ିଛି । ଇଚ୍ଛାବତୀର ବର୍ଣ୍ଣନା ଚିତ୍ରକାବ୍ୟ ବନ୍ଧୋଦୟରେ ଓ ଶିଶୁଶଙ୍କରଙ୍କର ଉଷାଭିଳାଷରେ ଉଷାର ସ୍ୱପ୍ନ ଦର୍ଶନ ସହ ଲାବଣ୍ୟବତୀର ସ୍ୱପ୍ନଦର୍ଶନ ଏବଂ ଜୟଦେବଙ୍କର ଗୀତଗୋବିନ୍ଦର ପ୍ରଭାବ ଭଞ୍ଜଙ୍କର ଯମକରାଜ ଟୀକାର ଅଧିକାଂଶ ପଦରେ ବିଦ୍ୟମାନ ।

"ଚନ୍ଦ୍ରକ ଚାରୁ ମୟୂର ଶିଖଣ୍ଡ କମଣ୍ଡଳ ବଳୟିତକେଶମ୍
ପ୍ରଚୁର ପୁରନ୍ଦର ଧନୁରନୁରଞ୍ଜିତ ମେଦୁର
ମୁଦିର ସୁବେଶମ୍ ।" (ଗୀତଗୋବିନ୍ଦ—ଜୟଦେବ)

କଳାପୀ ତରଙ୍ଗ ତୂଳ ଭ୍ରମ କରଇ କୁନ୍ତଳ
ଚନ୍ଦ୍ରେ ରଖିଅଛି କ ସେ ସୁତ କୋରକ
କମଳାକ୍ଷ ଅପଘନ ଘନରସେ ପୁନଃ ପୁନଃ
ନିବେଶିତ ଅବିରତ ଚିତ୍ର ସ୍ତବକ
କର୍ଣ୍ଣେ ବେଣୁନାଦ ଦତ୍ତକ
କଦଳି ଘଣ୍ଟି ନାଦରେ ଶାଣାଭୁଳ୍ପକ ।

(କଳାକଉତୁକ)

ଏହି ସମସ୍ତ ବ୍ୟଞ୍ଜନରେ ଉପେନ୍ଦ୍ରଭଞ୍ଜ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ଯେଉଁସବୁ ଚିହ୍ନ ପ୍ରଦାନ କରିଛନ୍ତି, ତାହା ଗତାନୁଗତିକ କଥାବସ୍ତୁ ହୋଇଥିଲେ ମଧ୍ୟ ପୌରାଣିକ ଓ କାଳ୍ପନିକ ଭେଦରେ ତାଙ୍କର କାବ୍ୟକୃତିକୁ ବିଭାଜନ କରିଦେଲେ ସୁଦ୍ଧା ତାଙ୍କୁ ଏକାଧାରରେ କବିସମ୍ରାଟ, ସଙ୍ଗୀତସମ୍ରାଟ, ଶବ୍ଦସମ୍ରାଟ, ଜାତୀୟବାଦୀ, ଲିପିଶିଳ୍ପୀର ଭୂଙ୍ଗିମା, ସର୍ବବିଧ ସୌନ୍ଦର୍ଯ୍ୟବାଦୀ, ମାନବବାଦୀ, ପ୍ରକୃତିପ୍ରେମୀ, ଶ୍ରେଷ୍ଠ ମନସ୍ତତ୍ତ୍ୱବିତ୍ ଇତ୍ୟାଦି ଅନେକ ପର୍ଯ୍ୟାୟରେ ସମ୍ମାନିତ କରାଯାଇପାରେ ।

ଉପେନ୍ଦ୍ର ଭଞ୍ଜ ଥିଲେ ଶବ୍ଦର ଯାଦୁକର । ସେ କେବଳ ତତ୍ସମ, ତଦ୍ଭବ ଓ ପ୍ରାକୃତମିଶା ଅସଂଖ୍ୟ ଶବ୍ଦ ବ୍ୟବହାର କରି ନିଜର ପାଣ୍ଡିତ୍ୟ ପ୍ରଦର୍ଶନ କରିନାହାନ୍ତି, ଓଡ଼ିଆଭାଷାର ଶବ୍ଦଦୈନ୍ୟକୁ ଦୂର କରିପାରିଛନ୍ତି । ଏହି ଯାଦୁକାରିତାର ସ୍ୱରୂପ ବିଶେଷଭାବରେ ଅବନାରସତରଙ୍ଗ, ବୈଦେହୀଶବିଳାସ ଓ କଳାକଉତୁକରେ ଦେଖିବାକୁ ମିଳେ । ନିଜର ଶବ୍ଦସମୂହର ସୁଖବୋଧ ପାଇଁ ସେ ଗୀତାଭିଧାନ ମଧ୍ୟ ରଚନା କରିଛନ୍ତି । କୋଟିବ୍ରହ୍ମାଣ୍ଡସୁନ୍ଦରୀରେ କବି କହିଛନ୍ତି—

"ତରୁଣୀକୁଳର ସାର, ଆଶ୍ରୟରୁ ନିରନ୍ତର
କହେ ଉପଇନ୍ଦ୍ର ଭଞ୍ଜ ମୁଁ ଲଭିଛି ଶବଦସମୁଦ୍ରପାର ।"

ପ୍ରକୃତରେ ଭଞ୍ଜଙ୍କ ସୃଷ୍ଟିସମ୍ପଦରେ ବିଶେଷ ଭାବରେ— ଅନୁପ୍ରାସ, ଆଦ୍ୟଯମକ, ମଧ୍ୟଯମକ, ମାଳଯମକ, ସର୍ବଯମକ, ଶ୍ଳେଷ ଇତ୍ୟାଦି ଶବ୍ଦାଳଙ୍କାରର ବହୁଳ ପ୍ରୟୋଗ ଦେଖାଯାଏ । ଏଠାରେ ଗୋଟିଏ 'ଅନୁପ୍ରାସ' ଉଦାହରଣ ଦେଲେ ତାହା ସ୍ପଷ୍ଟ ହୋଇଯିବ—

"ଦେଖି ନବକାଳିକା ବକାଳିକା ମାଳିକା
ଆଳୀ,କାଳିକା କାନ୍ତ ସ୍ମରି
ରକ୍ଷା କେମନ୍ତେ କରି କରିବା ମତ୍ତ କରି
ଗଣିକ ଏମନ୍ତ ବିଚାରି ।—ଲାବଣ୍ୟବତୀ—

ଭଞ୍ଜ ଓଡ଼ିଶୀ ସଂଗୀତର ଶାସ୍ତ୍ରୀୟ ଆଧାର ଉପରେ ଭିତ୍ତି କରି ଏବଂ ସ୍ଥଳବିଶେଷରେ ଓଡ଼ିଶୀ ସଙ୍ଗୀତ କର୍ତ୍ତାଙ୍କ କମ୍ପା ଉତ୍ତର-ଭାରତୀୟ ପଦ୍ଧତିର 'ମେଳ'ରେ ନୂତନ ସ୍ୱରୂପ ସୃଷ୍ଟି କରିଛନ୍ତି । ପୁଣି ସେହି ଅନୁଯାୟୀ କାବ୍ୟ ସୃଷ୍ଟି କରି ଆପଣା କାବ୍ୟପ୍ରତିଭା ସହିତ ସଂଗୀତପଟୁତାର ପରିଚୟ ଦେଇଥିବାରୁ ତାଙ୍କୁ ସଂଗୀତ-ସମ୍ରାଟ କହିବାର ଯଥେଷ୍ଟ ବିଶେଷତ୍ୱ ଅଛି । ଯଥାର୍ଥରେ ଗୋପବନ୍ଧୁ ଦାସ ଗାଇଛନ୍ତି—

"ଗାଏ ଭୃମୃ ଗୀତ ସଭାରେ ପଣ୍ଡିତ ପଥେ ପାନ୍ଥ ହୃଷ୍ଟମନା
ବଳେ ଗାଏ ଚଷା ଅନ୍ତଃପୁରେ ଯୋଷା ନୃତ୍ୟରଙ୍ଗେ ବାରଙ୍ଗନା ।

କବିତା ହେଉଛି ଉତ୍କୃଷ୍ଟ କଳା । ଜଡ଼କୁ ଜୀବନ୍ତଭାବେ ପ୍ରତିଭାତ କରାଇ ସେଥିବରେ ସୁଷମା ସମ୍ଭାରର ସମାବେଶ କରାଇବା କଳାର ଏକ ବିଶିଷ୍ଟ ଲକ୍ଷଣ । କବିତା, ଶିଳ୍ପ, ସ୍ଥାପତ୍ୟ, ଭାସ୍କର୍ଯ୍ୟ, ସଂଗୀତ, ନୃତ୍ୟ, ବାଦ୍ୟ, ଅଭିନୟ, ଆଲେଖ୍ୟ, ଚିତ୍ରରଚନା, ନେପଥ୍ୟଯୋଗ, ବିବିଧ ସାଜସଜ୍ଜା ଓ ସାମଗ୍ରୀ ସଂପାଦନାଦିରେ ପ୍ରାୟ ପ୍ରତ୍ୟେକ କଳାକାର ନିଜ ନିଜର କଳାକୁ ଚରମୋତ୍କର୍ଷକ ଭାବରେ ଫୁଟାଇବାକୁ ଚେଷ୍ଟା କରନ୍ତି । ଏଥିପାଇଁ ସେମାନେ କବିପ୍ରତିଭାରେ ଭୂଷିତ ହୋଇପାରନ୍ତି । ମାତ୍ର କବିକୃତିର ବୈଶିଷ୍ଟ୍ୟ ଏବଂ କଳାର ବୈଲକ୍ଷଣ୍ୟ କବିପ୍ରତିଭାର ପ୍ରକୃଷ୍ଟ ଅଭିବ୍ୟଞ୍ଜକ ।

ଏହି ପ୍ରକାର ବ୍ୟଂଜନା (Suggestiveness) ଶକ୍ତିସଂପନ୍ନ କବିତାକାରରେ ଯେଉଁ କବିର ଜାଗତିକ ସୂକ୍ଷ୍ମାନୁଭୂତି ସକଳ-ଭାବରେ ପାଠକ ସମକ୍ଷରେ ଉପସ୍ଥାପିତ ହୋଇ ବ୍ୟକ୍ତି, ଜାତି ତଥା ଗୋଷ୍ଠୀକୁ ଉନ୍ନତ ମାନବିକତାର ଇଙ୍ଗିତରେ ପରିଚାଳନା କରି ସାହିତ୍ୟର ପ୍ରଗତି ପଥରେ ନୂତନତ୍ୱ ପ୍ରଦାନ କରେ, ସେହି କବିର କବିତାହିଁ ସରସ, ସୁନ୍ଦର ଓ ତାହାହିଁ ସାହିତ୍ୟର ଅତୁଳନୀୟ ସଂପଦ । ତାହାହିଁ କବିଙ୍କ ପ୍ରତିଭାର ପରିଚୟ । ଓଡ଼ିଆ ଜାତି ତଥା ବିଶ୍ୱ ପାଇଁ ଏହିପ୍ରକାର ସାହିତ୍ୟ ସୃଷ୍ଟି କରିଥିବାରୁ ଉପେନ୍ଦ୍ର ଭଞ୍ଜ କେବଳ ପ୍ରତିଭାଶାଳୀ କବି ନୁହନ୍ତି ବରଂ କବିସମ୍ରାଟ ।

କବିସମ୍ରାଟଙ୍କ ରଚନା କେବଳ ଓଡ଼ିଶାରେ ସୀମାବଦ୍ଧ ନୁହେଁ; ତାଙ୍କ ସାହିତ୍ୟ ସହିତ ବିଶ୍ୱର ଅନେକ ସାହିତ୍ୟ ତୁଳନା କରିଯାଇପାରେ । ଏଠାରେ ସେକ୍‌ସପିଅରଙ୍କ 'ରୋମିଓ ଏବଂ ଜୁଲିଏଟ୍' ନାଟକ ବର୍ଣ୍ଣିତ ପ୍ରେମିକପ୍ରେମିକାଙ୍କ ବିରହ ବର୍ଣ୍ଣନା ସହ 'ଲାବଣ୍ୟବତୀ'ର ନାୟକ-ନାୟିକାଙ୍କ ବିରହ ଅବସ୍ଥା ତୁଳନୀୟ ।

ଜୁଲିଏଟ୍‌ର ବିଚ୍ଛେଦ ବର୍ଣ୍ଣନା କରି ତାହାର ଧାତ୍ରୀ ମୁଖରେ କୁହାଯାଇଛି—

"O she says nothing sir
but weeps and weeps
And now falls on her bed
and then starts up.

ଲାବଣ୍ୟବତୀରେ "ଚେତି ଚମକି ଚାହିଁଲା ନିଶିନାଶେ ପାଶେ ନାହିଁ ଦିବ୍ୟ ତରୁଣ···" ଇତ୍ୟାଦି । ପୁନଶ୍ଚ ସେକ୍‌ସପିଅରଙ୍କ ପଞ୍ଚମ ଅଙ୍କ ପ୍ରଥମ ଦୃଶ୍ୟରେ ସ୍ୱପ୍ନୋତ୍‌ଥିତ ରୋମିଓର ଚିନ୍ତା ରୋମିଓ ମୁଖରେ ପ୍ରକାଶ ପାଇଛି—

"Strange dream, that gives a deadman
Leave to think !
And breathed such life with kisses
In my lips
That I revived and was an emperor."

ଲାବଣ୍ୟବତୀର ଚନ୍ଦ୍ରଭାନୁ ମଧ୍ୟ ସେହିକଥା ଭାବନ୍ତି—
(ଚତୁର୍ଦ୍ଦଶ ଛାନ୍ଦ)

"ମନୁ ମୂର୍ଚ୍ଛିନ୍ତ ଅବା ସ୍ୱପନ ବୋଲି
ଜାଣିଲି ଏହି ଦେହେ କୃତାର୍ଥ ହେଲି ଯେ···" ଇତ୍ୟାଦି ।

ଜଣେ ଥିଲେ ମାନବବାଦୀ । ତେଣୁ 'ବୈଦେହୀଶ ବିଳାସ'ରେ ରାମ-ଲକ୍ଷ୍ମଣ ବନକୁ ଯିବା ସମୟରେ କୌଶଲ୍ୟା ସୀତାଙ୍କୁ ଯେଉଁ ଉପଦେଶ ଦେଇଛନ୍ତି, ତାହା ବାସ୍ତବରେ ମାନବିକ ଆବେଦନ । ଯଥା:—

"ବିପିନରେ ଦୀନ-ଉରଜା ଅପୂର୍ବ ଦ୍ରବ୍ୟ ଦେଖି ନ ମାଗିବୁ
ବେନି ସହୋଦର ମଧ୍ୟରେ ଆଦର ବିପଥରେ କରିଥିବୁ
ବାଷ୍ପେ ଭିଜିଲା ଉର
ବାଣୀ ନ ସ୍ଫୁରେ କଣ୍ଠୁ ତାଙ୍କର ।"

ମାତ୍ର ସୀତା ଏହାକୁ ଯେତେବେଳେ ରକ୍ଷା କରି ନାହାନ୍ତି, ସେତେବେଳେ ସେ ବିପଦରେ ପଡ଼ିଛନ୍ତି । ସେ ଯାହା ହେଉନା କାହିଁକି, ଆମେ ଏଥିରେ ଜନନୀପ୍ରାଣର ସନ୍ତାନ ପ୍ରତି ଅନ୍ତରର ଆବେଗ ଲକ୍ଷ୍ୟ କରିଥାଉ । ଏତଦ୍‌ଭିନ୍ନ ଭଞ୍ଜ ଶୃଙ୍ଗାର ରସର ବାହକ ହୋଇଥିଲେହେଁ ଏହି ପଦଟିରେ ଆମେ ବାତ୍ସଲ୍ୟରସ ସହ କରୁଣ-ରସର ଅପୂର୍ବ ସମାହାର ଦେଖିବାକୁ ପାଇଥାଉଁ । ପୁନଶ୍ଚ ପ୍ରକୃତ

ସହିତ ମାନବର ସୁଖଦୁଃଖର ଅପୂର୍ବ ମିଳନ କରାଇ କବି 'କୋଟିବ୍ରହ୍ମାଣ୍ଡସୁନ୍ଦରୀ'ରେ କହିଛନ୍ତି—

"କୁମୁଦ ବିକାଶ ଭୁଟି ଭୁଟି ଯାଇ ପଦ୍ମ ଫୁଟି ଫୁଟି ଆସେ
ଦରଷ ହରଷ ପାଳଟା ପାଳଟି ମଧୂଳିଟ ବିଟ କ ସେ ।"

କେବଳ ଏତିକ ନୁହେଁ; କବିଙ୍କର ନାରୀ ଓ ପ୍ରକୃତି ଏକ ଏବଂ ଅଭିନ୍ନ । 'ରସଲେଖା'ର ନେତ୍ର ବର୍ଣ୍ଣନାରେ କବି କହନ୍ତି—

"କିଏ କୁରଙ୍ଗ କି ଅବା ଭୃଙ୍ଗ
ଏଣି ଚେଣିକି କରଇ ସୁରଙ୍ଗ
କିଏ ନବ ବିକଚ ପଦ୍ମଦଳ
ପଡ଼ି କାଳିନ୍ଦୀ ଜଳେ ଢଳ ଢଳ ।"

କବି ତାଙ୍କର ପ୍ରାୟ ପ୍ରତ୍ୟେକ କାବ୍ୟରେ ଯେଉଁ ନାରୀମନର ବିଭିନ୍ନପ୍ରକାର ମନସ୍ତାତ୍ତ୍ୱିକ; ଯଥା:—ପ୍ରେମଭିତ୍ତିକ, ଈର୍ଷାଭିତ୍ତିକ, ଲଜ୍ଜାଭିତ୍ତିକ ଓ ବାତ୍ସଲ୍ୟଭିତ୍ତିକ ଚିତ୍ର ଦେଇଛନ୍ତି, ତାହା ତାଙ୍କୁ ଶ୍ରେଷ୍ଠ ମନସ୍ତତ୍ତ୍ୱବିତ୍ ଭାବରେ ସମ୍ମାନିତ କରିଛି । 'ସୁବର୍ଣ୍ଣରେଖା'ରେ ଯୁବତୀ ସୁଲଭ ଲଜ୍ଜାର ପରିଚୟ ଦେଇ ନାୟକ ମୁଖରେ କବିସମ୍ରାଟ କହିଛନ୍ତି—

"ମୋର ନ ଚାହିଁଲା ବେଳେ ଅନାଇ
ଚାହିଁଦେଲେ ମହୀ ଦୃଷ୍ଟି କରଇ
ମୋତେ ଚାହିଁବାକୁ ବଡ଼ ଶରଧା
ଲାଜ କୃପଣ କରୁଥାଇ ବାଧା ।"

ପୁନଶ୍ଚ 'ଲାବଣ୍ୟବତୀ'ର ପଞ୍ଚମ ଛାନ୍ଦରେ ମଧୁଋତୁ ଆଗମନ ସମାଚାରର ପ୍ରଭାମଞ୍ଜୁଳା ସୁନ୍ଦରୀ ଚିତ୍ତରେ ଯେଉଁ ରୀତିରେ ଜଣାଇଛି, ତାହା ଅତ୍ୟନ୍ତ ସ୍ୱାଭାବିକ ଓ ଭାବଗର୍ଭକ—

"ଏହି ସମୟରେ ସୁନ୍ଦରୀ ଗ୍ରୀଷ୍ମରେ ପ୍ରଭାମଞ୍ଜୁଳା ଜଣାଇଲା

× × ×

ମଳୟଶିଖର-ଶିରୀ ଗ୍ରେଣ କର କହିଲାଣି ମନ୍ଦ ସମୀର
ସୁମନାଙ୍କ ବାସ ଖେଳାଇ ନେବଟି ବୋଲି କହିଲାଣି ଭ୍ରମର
କେଶର ! କେଶରେ ହେଲେଣି ମଞ୍ଜୁଳ
କେଶରେ ମଣ୍ଡନ କରିବା ଭଳିରେ
ଫୁଟିଲେଣି କେତେ ବଞ୍ଜୁଳ ।" ଇତ୍ୟାଦି .....

ଏଥିରୁ ମଧ୍ୟ କବିଙ୍କର ସୌନ୍ଦର୍ଯ୍ୟବୋଧ ଦୃଷ୍ଟିକୋଣର ପରିଚୟ ମିଳିଥାଏ ।

ପ୍ରାଚୀନ ଭାରତୀୟ ସାହିତ୍ୟର ଆଦର୍ଶ ସମାଜ ତଥା ବ୍ୟକ୍ତିର ମଙ୍ଗଳ ପାଇଁ ଉଦ୍ଦିଷ୍ଟ ଥିଲା । ସେ ଦୃଷ୍ଟିରେ ଉତ୍ତମପାଦଙ୍କ ସମ୍ମୁଖରେ ଦୁଇଟି ମାର୍ଗ ଉନ୍ମୁକ୍ତ ଥିଲା—ଗୋଟିଏ ସୁରୁଚିର ଓ ଅନ୍ୟଟି ସୁନୀତିର । ଏମାନେ ସୁନୀତିର ମାର୍ଗକୁ ଆଶ୍ରୟ କରୁଥିଲେ । କାରଣ ସେମାନେ ନ ଥିଲେ ପ୍ରେୟର ପୂଜାରୀ, ଥିଲେ ଶ୍ରେୟର । ସୁରୁଚିର ଗର୍ଭରୁ ଯାହା ଜନ୍ମନିଏ, ତାକୁ ହୁଏତ ଆପଣାଭୁଲା ମନୁଷ୍ୟ ଜାତି ଉତ୍ତମ ନାମ ଦେଇପାରେ; କିନ୍ତୁ ତାହା ଧ୍ରୁବ ନୁହେଁ ।

ଏହି ସୁନୀତିର ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ କବି-ସମ୍ରାଟ ଉପେନ୍ଦ୍ର ଭଞ୍ଜ । ଫଳରେ ପୂର୍ବାଲୋଚିତ ଚୈତନ୍ୟଦେବଙ୍କ ଆଗମନ ପରେ ପରକୀୟା ତତ୍ତ୍ୱରେ କେବଳ ଓଡ଼ିଆ ସାହିତ୍ୟ ନୁହେଁ, ଓଡ଼ିଶୀ ଜନଜୀବନ ଯେପରି କଳୁଷିତ ଓ ବିକଳାଙ୍ଗ ହୋଇ-ଯାଇଥିଲା, ତହିଁରେ ଜାତିକୁ ଊର୍ଦ୍ଧ୍ୱମୁଖୀ କରାଇବାକୁ ଉପେନ୍ଦ୍ର ବ୍ରତୀ

ହୋଇଥିଲେ । ତେଣୁ ସେ ତାଙ୍କ କାବ୍ୟର ନାୟକ ରାଜପୁରୁଷମାନଙ୍କୁ ଦିଗ୍‌ବିଜୟୀ ଓ ସକଳ କଳାବିଶାରଦ କରିବା ସଙ୍ଗେ ସଂଗେ ସେମାନଙ୍କୁ ପରକୀୟା ଜଗତରୁ ସ୍ୱକୀୟା ଜଗତକୁ ଟାଣି ଆଣିଥିଲେ । ମୋଟ ଉପରେ କୁହାଯାଇପାରେ ଯେ, ଚୈତନ୍ୟଙ୍କ ପ୍ରବର୍ତ୍ତିତ ଗୌଡ଼ୀୟ ବୈଷ୍ଣବୀ ବନ୍ୟା ବିରୁଦ୍ଧରେ ଭଞ୍ଜସାହିତ୍ୟ ଏକ ବିରାଟ ପ୍ରତିବାଦ ।

ଭଞ୍ଜ ତାଙ୍କର କାବ୍ୟ କବିତାରେ କେତେବେଳେ ପଞ୍ଚ-ଦେବତାର ଉପାସକ ଥିଲେ; ଯଥା:—ବୈଦେହୀଶବିଳାସ ୧ମ ଛାନ୍ଦରେ "ବନ୍ଦଇ ଧୀନବାନ୍ଧବ ହରି, ଯେ ଚମ ଚନ୍ଦ ଖଣ୍ଡନକାରୀ; ସଦା କମଳାନନ୍ଦ ବିସ୍ତାରି, ସ୍ୱଭାବେ ଶ୍ରୀନ ଯେ" ଇତ୍ୟାଦି । ପୁଣି କେତେବେଳେ 'ମୋ ପ୍ରଭୁ ଶ୍ରୀରାମ ବା ରାମତାରକମନ୍ତ୍ର ସିଦ୍ଧ କରି ମୋର କବିତ୍ୱ ପ୍ରସରିଥିବା' କଥା କହିଥିଲେହେଁ ପ୍ରକୃତରେ କବି ଥିଲେ ଓଡ଼ିଶୀ ବୈଷ୍ଣବ ଏବଂ ଜଗନ୍ନାଥହିଁ ଥିଲେ ତାଙ୍କର ଆରାଧ୍ୟ ଦେବତା । ଭକ୍ତ କେବେ ମନ୍ତ୍ର କହି ଦେବ ଉପାସନା କରି ନ ପାରେ । ଅନ୍ତରକୁ ସେ ତନ୍ମୟ ସତ୍ତାରେ ବିଲୁପ୍ତ କରିଦିଏ । ଏତଦ୍‌-ଭିନ୍ନ ବୈଦେହୀଶବିଳାସରେ 'ପତିତପାବନ' ଶବ୍ଦ ପ୍ରୟୋଗ, ଅଯୋଧ୍ୟାରେ ରାମ, ଲକ୍ଷ୍ମଣ, ସୀତାଙ୍କର ଅଭିଷେକ ବର୍ଣ୍ଣନାବେଳେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାର କଳ୍ପନା, 'କଳାକଉତୁକରେ କୃଷ୍ଣଙ୍କ ଉପାସନା, କୋଟିବ୍ରହ୍ମାଣ୍ଡସୁନ୍ଦରୀର ପ୍ରଥମ ଛାନ୍ଦରେ ପୁରୁଷୋତ୍ତମ କ୍ଷେତ୍ରର ବର୍ଣ୍ଣନା ଏବଂ ମାନଜନ୍ଧାରଣ ଚଉତିଶା ଇତ୍ୟାଦିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, କବିଙ୍କ ଦୃଷ୍ଟିରେ ଜଗନ୍ନାଥ ଥିଲେ ଅବତାରୀ ଏବଂ ରାମକୃଷ୍ଣ ଥିଲେ ଅବତାର । ତେଣୁ କେତେବେଳେ ଜଗନ୍ନାଥଙ୍କ ସହ ରାମଙ୍କର ଅଭେଦତ୍ୱ ବର୍ଣ୍ଣନା କରି, କେତେବେଳେ ଜଗନ୍ନାଥଙ୍କ ସହ କୃଷ୍ଣଙ୍କର ଅଭେଦତ୍ୱ ପ୍ରତିପାଦନ କରି ଶ୍ରୀକ୍ଷେତ୍ରର

ମହିମା ପ୍ରତିଷ୍ଠା କରି ଯାଇଛନ୍ତି । ଏଥିରେ ଉପେନ୍ଦ୍ର ଶ୍ରେଷ୍ଠ ଜାତୀୟବାଦୀ କବି ରୂପେ ପ୍ରତିଭାତ ହୁଅନ୍ତି ।

ଭଞ୍ଜସାହିତ୍ୟରେ ଓଡ଼ିଶା ସମାଜ ଜୀବନର ଚିତ୍ର ମଧ୍ୟ ବିରଳ ନୁହେଁ । ବିଭିନ୍ନ ଓଷା, ବ୍ରତ, ପୂଜା ପାର୍ବଣର ଚିତ୍ର ଦେଇ ସେ ସାମାଜିକ ଜୀବନକୁ ପ୍ରତିଷ୍ଠା କରି ଯାଇଛନ୍ତି । ଏତଦ୍‌ଭିନ୍ନ ସମାଜରେ ସେ ନାରୀକୁ କେବଳ ଅର୍ଦ୍ଧାଙ୍ଗିନୀ ରୂପେ ନ ଦେଖି ସହକର୍ମିଣୀ, ସହଧର୍ମିଣୀ ରୂପେ ମଧ୍ୟ ଦେଖିଛନ୍ତି—ଯାହାକି ବିଂଶ ଶତାବ୍ଦୀରେ ସମାଜ ଅନୁଭବ କରେ । ତା'ପରେ କବି ଥିଲେ ନୀତିବାନ୍ । ତେଣୁ ସେ ତାଙ୍କର ନାୟକ-ନାୟିକାଙ୍କୁ ବିବାହ ନ କରାଇ କେବେ ମିଳନ କରାଇ ଦେଇ ନାହାନ୍ତି, ଏହାହିଁ ତାଙ୍କର ବୈଶିଷ୍ଟ୍ୟ । କେତେକ କହନ୍ତି ଯେ, ଭଞ୍ଜ ସାଧାରଣ ଜନଜୀବନର କଥା କହିନାହାନ୍ତି । ମାତ୍ର ଏ କଥା ଭୁଲିଗଲେ ଚଳିବ ନାହିଁ ଯେ ଗୀତାର ଉକ୍ତି ଅନୁସାରେ ସମ୍ଭ୍ରାନ୍ତ ବଂଶର ଆଚାର ବ୍ୟବହାର ଦ୍ୱାରା ନୀଚ ଜାତିର ଲୋକମାନେ ଅନୁପ୍ରାଣିତ ହେଉଥିବାରୁ ସେତେବେଳେ ସମାଜରେ କେବଳ ଉଚ୍ଚବଂଶୀୟ ନାୟକନାୟିକାଙ୍କର ଚିତ୍ର ବର୍ଣ୍ଣନା କରାଯାଉଥିଲା । ଏହିପରି ଭଞ୍ଜକାବ୍ୟରେ ଆମେ ଅନେକ ଚିତ୍ର ଦେଖିବାକୁ ପାଇଥାଉଁ—ଯାହା ବର୍ଣ୍ଣନା କରିବା ଏକାନ୍ତ ଦୁରୂହ ।

ପରବର୍ତ୍ତୀ କାଳରେ ଭଞ୍ଜକାବ୍ୟଦ୍ୱାରା ବହୁ ପ୍ରତିଷ୍ଠିତ କବି ମଧ୍ୟ ପ୍ରଭାବିତ ହୋଇଛନ୍ତି । ଅର୍ଥାତ୍ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ବିରାଟ କାବ୍ୟସମୁଦ୍ରରୁ ଆଧୁନିକ ଯୁଗର ସ୍ରଷ୍ଟା କବିବର ରାଧା-ନାଥଙ୍କ ପର୍ଯ୍ୟନ୍ତ କବିଙ୍କର କାବ୍ୟସେ଼ତସ୍ୱିନୀମାନେ ଚିନ୍ତା-ଚେତନାର ଫଲ୍‌ଗୁମାନ ନିଜ ବକ୍ଷରେ ଗ୍ରହଣ କରି ପୁଷ୍ଟିଲାଭ

କରିଛନ୍ତି—ଏହା ଆଦୌ ଭିତ୍ତିହୀନ ନୁହେଁ । ଅଭିମନ୍ୟୁ ସାମନ୍ତ-ସିଂହାର ସ୍ପଷ୍ଟରୂପେ ଘୋଷଣା କରିଛନ୍ତି—

"ଉପେନ୍ଦ୍ର ପଦ ଅଭିମନ୍ୟୁ ମନୁ
ପାଶୋରି ନ ଯିବ ଦିନୁ ଦିନୁ ।"

ଏତଦ୍‌ଭିନ୍ନ 'ଲାବଣ୍ୟବତୀ'ର ୧୧ଶ ଛାନ୍ଦରେ ବର୍ଣ୍ଣିତ ଚନ୍ଦ୍ରଭାନୁ ଓ ଲାବଣ୍ୟବତୀର ସ୍ୱପ୍ନସଂବାଦ ବର୍ଣ୍ଣନା ବିଦଗ୍‌ଧ-ଚିନ୍ତାମଣିର ୩୦ ଛାନ୍ଦ ଅନ୍ତର୍ଗତ ବର୍ଣ୍ଣନା ସହିତ ସାମ୍ୟ ରକ୍ଷିଛି । ପୁନଶ୍ଚ ଉଭୟ କାବ୍ୟରେ ନିଦ୍ରିତା ନାୟିକାର ନିଦ୍ରାଭଙ୍ଗ ବର୍ଣ୍ଣନା ପ୍ରାୟଶଃ ସମାନ । ଉଦାହରଣ ସ୍ୱରୂପ—

"ଭଜୁ ନ ଭଜୁ କାମିନୀ　　ଆଗ ମୁଁ ନିଦ୍ରା ଭାଙ୍ଗିବି
ଜାନୁ ଧରି ଦେଲ୍ଲ ଝୁଲାଇ
ପୁଂସକର ଲାଗି ନିଦ୍ରା ବିନାଶ ହୋଇ ।" (ଲାବଣ୍ୟବତୀ)

"ଭାଗ୍ୟ କଳ୍ପତରୁ ଫଳ　　କରୁ ନ କରୁ ସ୍ୱୀକାର
ଛୁଇଁଥିବି କଳେବର
ଦୁଇ ମତେ ଅମୃତ ଦାୟିତ ହୋଇବ
ଏତେ ଭାଳି ଆତୁର ହୋଇ
ଖୁରୁ ପ୍ରଭୃତି ଉରୁ ଧରି ଦେଲ୍ଲ ଝୁଲାଇ । ଇତ୍ୟାଦି ."

ଅଭିମନ୍ୟୁଙ୍କର କବିଗୁରୁ ସାଧୁଚରଣ ବା କବିସୂର୍ଯ୍ୟ ବ୍ରହ୍ମା ନିଜର ବୈଷ୍ଣବୀୟ ରଚନାଗୁଡ଼ିକର ଅନ୍ତରାଳରେ ମଧ୍ୟ ଉପେନ୍ଦ୍ରଙ୍କୁ ଅନେକାଂଶରେ ଅନୁସରଣ କରିଥିଲେ ।

"ସାରଙ୍ଗରଜ ପଲଙ୍କେ ସାରଙ୍ଗ ପଂକଜ ପଙ୍କେ
ସାରଙ୍ଗମୁଖୀ ସାରଙ୍ଗ ସାରଙ୍ଗରେ ମାଣ୍ଡିଲେ"ର ଅନୁରୂପ ପ୍ରୟୋଗ ସଦାନନ୍ଦଙ୍କ କୃତିରେ ଦେଖାଯାଏ—

"ସାରଙ୍ଗ ଚତୁରତଳେ ସାରଙ୍ଗଧର ହେଲେ
ସାରଙ୍ଗମୁଖୀ ଦେଖଇଟି
ସାରଙ୍ଗ ସାରଙ୍ଗରେ ସାରଙ୍ଗ ସାରଙ୍ଗରେ
ସାରଙ୍ଗ ସାରଙ୍ଗ ବଢ଼ଉଛି । ଇତ୍ୟାଦି..."

ଉପେନ୍ଦ୍ର ସ୍ୱୀୟ କାବ୍ୟଜଗତରେ ଯେଉଁ ନଗର, ବନ, ସରୋବର ଓ ବସନ୍ତବିଳାସର ଆଡ଼ମ୍ବରପୂର୍ଣ୍ଣ ଅଥଚ ମନୋରମ ବର୍ଣ୍ଣନା କରି ଯାଇଛନ୍ତି, ତାହାର ପ୍ରଭାବରେ 'ପଦ୍ମାବତୀ ଅଭିଳାଷ'ର କବି ନିଜଙ୍କ ସୃଷ୍ଟିବଣୀ ପ୍ରଭାବିତ ହୋଇଛନ୍ତି । ସରୋବର ବର୍ଣ୍ଣନାରେ ସେ ଲାବଣ୍ୟବତୀ ଷଷ୍ଠ ଛାନ୍ଦରେ ଥିବା ସରୋବର ବର୍ଣ୍ଣନାକୁ ସେ ଏକାବେଳେକେ ନକଲ କରି ପକାଇଛନ୍ତି ତାହା କହିଲେ ଅତ୍ୟୁକ୍ତି ହେବନାହିଁ ।

"କି ମାଳଶାଢ଼ୀ ହଂସାବଳୀ ରଙ୍ଗଧଡ଼ି ହୋଇଛି
ଅବନୀ ବନିତା ବସ୍ତ୍ରରେ କଳା କଣିକା ଇଚ୍ଛି
ପାବକ ସ୍ୱଚ୍ଛ ସ୍ଫଟିକରେ ନୀର ଖୀର ପ୍ରଶାନ୍ତ
ସୁବେଣୀ ପରଶ ଭାବକ ତହିଁ ତ୍ରିବେଣୀ ଖ୍ୟାତ ।
(ଲାବଣ୍ୟବତୀ)

"ସେ ନରବର ସରୋବର ବୁଲି ଦେଖନ୍ତି ଶୋଭା
ସ୍ଫଟିକ ପାବଚ୍ଛ କକୁଳ ମୂଳେ ହୋଇଲେ ଜଭା
ମାଳଶାଢ଼ୀ ରଙ୍ଗଧଡ଼ିରେ ହଂସାବଳୀ ଶୋଭନ
ମହୀ ମହିଳା ଚତ୍ତ୍ୱାରବା ପ୍ରାପ୍ତେ ବିଶେ ରଞ୍ଜନ
ଚନ୍ଦ୍ର କୁମୁଦ କୋକନଦଙ୍କର ସୁବାସ ଘେନ
ଭ୍ରମରେ ଭ୍ରମରେ ଭ୍ରମନ୍ତି କରି ହରଷ ଧ୍ୱନ ।"
(ପଦ୍ମାବତୀ ଅଭିଳାଷ)

ଉପେନ୍ଦ୍ର ସାହିତ୍ୟରେ ସଙ୍ଗୀତର ଯେଉଁ ଅଲୌକିକ ପ୍ରୟୋଗମାଧୁରୀ ସ୍ୱୀକାର କରିଥିଲେ, ତାହା ସଙ୍ଗୀତସମ୍ରାଟ୍ କବିସୂର୍ଯ୍ୟ ବଳଦେବ ରଥ ଓ କଳକଣ୍ଠ ଗୋପାଳକୃଷ୍ଣଙ୍କ ଦ୍ୱାରା ଅଧିକ ପରିସ୍ଫୁଟ ଓ ବ୍ୟଞ୍ଜିତ ହୋଇପଡ଼ିଛି । କେବଳ ଏତିକି ନୁହେଁ, କବିସୂର୍ଯ୍ୟଙ୍କର 'ରସକଳା' କାବ୍ୟ ଭଞ୍ଜୀୟ ପ୍ରଭାବର ଗୁପ୍ତାପାତ କହିଲେ ଭୁଲ ହେବ ନାହିଁ ।

ଉତ୍କଳର ବହୁ ଭାଷାବିତ୍ କବି ବ୍ରଜନାଥ କାବ୍ୟଜଗତରେ ନିଜ ସ୍ୱଭାବସୁଲଭ ବ୍ୟତିକ୍ରମ, ନୂତନତ୍ୱ ଓ ବୈଶିଷ୍ଟ୍ୟ ସତ୍ତ୍ୱେ ମଧ୍ୟ ଭଞ୍ଜୀୟ ରଚନାଦ୍ୱାରା କମ୍ ପ୍ରଭାବିତ ହୋଇ ନାହାନ୍ତି । କବିଙ୍କର ଶ୍ୟାମରସୋତ୍ସବ ଓ ଅନ୍ୟାନ୍ୟ କାବ୍ୟଗୁଡ଼ିକର ଭାଷାରୁ ଏହା ସୁସ୍ପଷ୍ଟ ।

ଉପେନ୍ଦ୍ର କାବ୍ୟସାଧନାପୀଠର ଅନ୍ୟତମ ଦାୟାଦ ହେଉଛନ୍ତି ଆଶୁକବି ଯଦୁମଣି । ନିଜ ଶିକ୍ଷାର ସ୍ୱଳ୍ପତା ସତ୍ତ୍ୱେ ଉପେନ୍ଦ୍ର ରଚନାର ପ୍ରଭାବରେ ପ୍ରଭାବିତ ହୋଇ ସେ ଯେଉଁ 'ରୁକ୍ମିଣୀପରିଣୟ' କାବ୍ୟ ସୃଷ୍ଟି କରିଛନ୍ତି, ତାହା ଆଜି ମଧ୍ୟ ଉପେନ୍ଦ୍ର-ସାହିତ୍ୟର ଏକମାତ୍ର ସମକକ୍ଷ ରୂପେ ବିବେଚିତ । ବର୍ଣ୍ଣନା, କଥାବସ୍ତୁ, ଶବ୍ଦଯୋଜନା, ଅଳଂକାର ଓ ଛନ୍ଦପ୍ରୟୋଗ ସମସ୍ତ ଦୃଷ୍ଟିରୁ 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର' କାବ୍ୟଯୁଗର ଏକ ନିଚ୍ଛକ ସୃଷ୍ଟି ।

ଏହାପରେ ଆମ ଆଗରେ ଯେଉଁ ବିରାଟ ସାହିତ୍ୟସୌଧର ସ୍ରଷ୍ଟା ଦେଖାଦିଅନ୍ତି, ସେ ହେଉଛନ୍ତି ଆଧୁନିକ ଯୁଗର ସ୍ରଷ୍ଟା କବି-ବର ରାଧାନାଥ ରାୟ । କବିବର ପାଶ୍ଚାତ୍ୟ ଶିକ୍ଷା, ସଭ୍ୟତା ଦ୍ୱାରା ଅନୁପ୍ରାଣିତ ହୋଇଥିଲେହେଁ ତାଙ୍କ କାବ୍ୟରେ ମଧ୍ୟ କବିସମ୍ରାଟଙ୍କର

କମ୍ ପ୍ରଭାବ ପଡ଼ି ନାହିଁ । 'ବୈଦେହୀଶବିଳାସ'ରେ କବିସମ୍ରାଟ ଲେଖିଛନ୍ତି—

"ବାଣଦେ ବାଣଦ ମେଳ ହେଲା ପ୍ରାପ୍ତ ରୁଷ ରକ୍ଷସଙ୍କ ଦ୍ୱନ୍ଦ୍ୱ
କରଷେ କେ ତହିଁ ଉପଳେ କେ କରେ ଆୟୁଧେ କୁଳଶ ଭେଦ
ସେ ବେଳ—ବିକାଶନ୍ତି ତହିଁ ଘୋର ଧ୍ୱନି
ବିଗ୍ରହରୁ ଜଳଧାର ଦାମି—"

'ମହାଯାତ୍ରା'ରେ ଅନୁରୂପ ଭାବେ ରାଧାନାଥ କହିଛନ୍ତି—

"ପ୍ରଳୟ ଜୀମୂତ ଯେହ୍ନେ ପୂର୍ଣ୍ଣଇରମ୍ମଦେ
ପ୍ରଭଞ୍ଜନ ପୃଷ୍ଠେ ନଭେ ବେଗେ ଉଡ଼ିଆସି
ବେନି ଆଜ୍ଞ ବେନି ପରେ ପଡ଼ନ୍ତି ଥୋକାଏ ।"

ପୁନଶ୍ଚ 'ଲାବଣ୍ୟବତୀ'ରେ—

ମନ ମୋହର ଭ୍ରମୁଛି ନିରତେ
ମଶା ମଶାରୀରେ ପଡ଼ି ଯେମନ୍ତେ ।

ଅନୁରୂପ ଭାବେ ରାଧାନାଥ ଲେଖିଲେ—

"ଆରେ ଭ୍ରମୁଅଛି ଏଣେ ତାର ମନ
ମଶାରୀ ଭିତରେ ମଶକ ଯେସନ ।"

—ନନ୍ଦିକେଶରୀ—

ଏହି ଯୁଗର ଅନ୍ୟତମ କବି କବିଶେଖର ଚିନ୍ତାମଣି ଭଞ୍ଜଙ୍କର ବାଦ୍ୱାଦ ଥିଲେ ବୋଲି କହିଲେ ଅସଙ୍ଗତ ହେବ ନାହିଁ ।

ବୈଦେହୀଶ ବିଳାସରେ—

କନକେ ଜାଳମ୍ବ, ଜାମ୍ବୁବ, ପନସ ଚନ୍ଦ୍ର, ତହିଁ ମନୋରମ
କନକରେ ମେଘନାଦକୁଳକଙ୍କ ମଣ୍ଡଳୀରେ ହୁଏ ଗଣ୍ୟ ।

ଅନୁରୂପ ଭାବେ ଧ୍ରୁବସର କାବ୍ୟରେ କବିଶେଖର ଚନ୍ଦ୍ରମଣି ଲେଖିଛନ୍ତି—

"କରିଜନ୍ତି ରାମ ସଙ୍ଗତ ଲକ୍ଷ୍ମଣ
ଚଳପାଶେ ଉଭା ଯୂଥପତିଗଣ
ଜାମ୍ବ, ଜାମ୍ବବ, ପନସ ଗବୟ
ସୁଗ୍ରୀବ, ସୁଷେଣ, କୁମୁଦ, ଦୁର୍ଜ୍ଜୟ । ଇତ୍ୟାଦି .."

ଏହିପରି ଅନେକ ଉଦାହରଣ ଦିଆଯାଇପାରେ ।

ବିଶ୍ୱକବି ମହାମନୀଷୀ ଗେଟେ ବିଶ୍ୱକବି କାଳିଦାସଙ୍କ 'ଶକୁନ୍ତଳା' ନାଟକର ଅନୁବାଦ ପାଠ କରି କହିଥିଲେ—

"Wouldst thou the young years blossoms
and fruits of its decline "And all
by which the heart is moved enraptured,
feasted and fed Wouldst thou heaven and
earth in one sole name combine
I name the O Shakuntala
And all at once is said."

ଅର୍ଥାତ୍ ଅୟି ଶକୁନ୍ତଳେ ! ବର୍ଷ ଆଦ୍ୟରେ ତରୁଲତାର ପ୍ରସ୍ଫୁଟିତ ସୁମନ ସମ୍ଭାରର ସୁଷମା, ବର୍ଷ ପ୍ରାନ୍ତରେ ଆବିର୍ଭୂତ ଫଳସମୃଦ୍ଧିର ସୁଷମା ଓ ପାର୍ଥିବ ସୃଷ୍ଟିର ଅନ୍ୟାନ୍ୟ ଯେତେ ଯେତେ ସୁଷମାଦ୍ୱାରା ଅନ୍ତରାତ୍ମା ପ୍ରୀତ ହୁଏ, ନନ୍ଦିତ ହୁଏ ଓ ଉପଭୋଗର ଚରମ ସନ୍ତୋଷ ଲାଭ କରେ ସେ ସମସ୍ତ ଏବଂ ଏପରିକି ଅମରାବତୀ ଓ ବସୁଧାର ସମ୍ମିଳିତ ତାବନ୍ତୀୟ ସୁଷମା କେବଳ ତୁମର ନାମୋଚ୍ଚାରଣ ମାତ୍ରେହିଁ ନିମିଷକେ ଦେଦୀପ୍ୟମାନ ହୋଇପଡ଼େ । ମାତ୍ର

କବିସମ୍ରାଟଙ୍କ ଲାବଣ୍ୟବତୀ ଓ କୋଟିବ୍ରହ୍ମାଣ୍ଡସୁନ୍ଦରୀ ଶକୁନ୍ତଳାଠାରୁ କୌଣସି ଅଂଶରେ ନ୍ୟୂନ ନ ହୋଇ ମଧ୍ୟ ଆଜି ବିଶ୍ୱଦରବାରରେ ଅଜ୍ଞାତ ।

କେବଳ ଏତିକି ନୁହେଁ; ପାଶ୍ଚାତ୍ୟ ଜଗତରେ ଶିଳ୍ପବିପ୍ଳବ, ନିରୀଶ୍ୱରବାଦ ପ୍ରତିଷ୍ଠା ହେବା ପରେ ରୋମାଣ୍ଟିକ ଭାବଧାରାର ବିଳୟ ହୋଇଥିବାରୁ ମଧ୍ୟଯୁଗୀୟ ସାହିତ୍ୟ ଭଞ୍ଜସାହିତ୍ୟ ପରି ବୋଧଗମ୍ୟ, ଆଳଂକାରିକ ବର୍ଣ୍ଣନାବିଳାସ ଇତ୍ୟାଦି ହୋଇପାରି ନାହିଁ । ତେଣୁ ଶେଷରେ ଏତିକି କହିଲେ ଯଥେଷ୍ଟ ହେବ ଯେ, ବାମନଙ୍କ ପ୍ରତିଷ୍ଠିତ ପ୍ରକୃତ ରୀତିତତ୍ତ୍ୱର ଯଦି ଆଲୋଚନା କରାଯାଏ, ତେବେ କବିସମ୍ରାଟ ସେହି ସମୟରେ କେବଳ ଓଡ଼ିଶାରେ କବିସମ୍ରାଟ ନ ହୋଇ ବିଶ୍ୱରେ ଯେ ଅଦ୍ୱିତୀୟ କବି ରୂପେ ଗଣ୍ୟ ହେବେ, ଏଥିରେ କୌଣସି ସନ୍ଦେହ ନାହିଁ ।

---

# ପ୍ରାଚୀନ ପଦ୍ୟାଦର୍ଶ—
# ଏକ ଦୃଷ୍ଟିପାତ

କାଳର ଆବର୍ତ୍ତନରେ ସମସ୍ତ କିଛି ବଦଳିଯାଏ, ସ୍ମୃତି ବିସ୍ମୃତିରେ ପରିଣତ ହୁଏ, ଯୁଗ ପରେ ଯୁଗର ସୃଷ୍ଟି ହୁଏ, ଉତ୍ଥାନ ପରେ ପତନ ହୁଏ । ଚିର ପରିବର୍ତ୍ତନଶୀଳ ଦୁନିଆରେ ସମସ୍ତର ପରିବର୍ତ୍ତନ ଘଟେ । ମାତ୍ର ତାରି ମଧ୍ୟରେ ନିତ୍ୟ ଗତିଶୀଳ ମାନବ ସୃଷ୍ଟ ସାହିତ୍ୟ ସଂପଦ ହିଁ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ପରଦାକୁ ଉନ୍ମୋଚନ କରେ; ଠିକ୍ ଅନ୍ଧାର ଗର୍ଭରେ ଧ୍ରୁବତାରା-ସଦୃଶ । ତେଣୁ ପ୍ରକୃତରେ ସାହିତ୍ୟହିଁ ମାନବ ସଭ୍ୟତା ବିକାଶରେ ଶାଶ୍ୱତ ତଥା ଅନବଦ୍ୟ ସୃଷ୍ଟ କଳା ।

ଆଲୋଚ୍ୟ ପ୍ରାଚୀନ ଗଦ୍ୟ ପଦ୍ୟାଦର୍ଶର ନାମକରଣରୁ ତାହାର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସଂପର୍କରେ ମଧ୍ୟ ସମ୍ୟକ୍ ସୂଚନା ମିଳିଥାଏ । 'ଆଦର୍ଶ' ଶବ୍ଦର ଆଭିଧାନିକ ଅର୍ଥ ମୁକୁର । ଏଣୁ ଏହା ପ୍ରାଚୀନ ଓଡ଼ିଆ ଗଦ୍ୟ ଓ ପଦ୍ୟର ମୁକୁର ସଦୃଶ । ଏଥିରେ ଗଦ୍ୟ ବିଭାଗରେ ମାଦଳାପାଞ୍ଜିଠାରୁ ଆରମ୍ଭ କରି ୧୮୧୧ ଖ୍ରୀଷ୍ଟାବ୍ଦର ଏକ ବିକ୍ରିନାମା ପର୍ଯ୍ୟନ୍ତ ଉଦ୍ଧୃତାଂଶମାନ ସଂଯୋଜିତ ହୋଇଛି ଏବଂ ପଦ୍ୟ ବିଭାଗରେ ସଂକଳୟିତା ପ୍ରାପ୍ତ [illegible] ଜଣ

କବିଙ୍କର କାବ୍ୟକବିତାର ନମୁନା ପ୍ରଦାନ କରିଛନ୍ତି । ସେହି କବିମାନଙ୍କ ରଚନାର ଭାଷା ତଥା ଶବ୍ଦ ପ୍ରୟୋଗ ଭିତରୁ ଓଡ଼ିଆ ସାହିତ୍ୟର କ୍ରମିକ ବିକାଶର ସୂଚନା ଦେଖିବାକୁ ମିଳେ । ଏତଦ୍‌ଭିନ୍ନ ଆଲୋଚ୍ୟ ପଦ୍ୟାଦର୍ଶରୁ ୨- ଛନ୍ଦର ବିକାଶ, ୩-ଅଳଙ୍କାର ପ୍ରୟୋଗ, ୪- ସମାଜଚିତ୍ର, (କ) ସାମାଜିକ ଚଳଣି, (ଖ) ଧାର୍ମିକ ଭାବନା, (ଗ) ସମାଜ ଚେତନା, ୫-ବିଭିନ୍ନ ରାଗ ରାଗିଣୀ, ୬-ଭାଷାର ବିବର୍ତ୍ତନ, ୭-ସାଂସ୍କୃତିକ ଦୃଷ୍ଟିର ପରିଚୟ ମଧ୍ୟ ମିଳେ । ଏଠାରେ ପଦ୍ୟାଦର୍ଶର ରଚନାଗୁଡ଼ିକ୍ ବିଭିନ୍ନ ଦୃଷ୍ଟିକୋଣରୁ ନିମ୍ନମତେ ବିଚାର କରାଯାଇପାରେ ।

ପ୍ରଥମରୁ କୁହାଯାଇଛି ଯେ ଭାଷା ଓ ସାହିତ୍ୟ ସର୍ବଦା ଗତିଶୀଳ । ତେଣୁ ଭାଷା ବିଷୟରେ ଭାଷାକୁ ତିନି ଭାଗରେ ବିଭକ୍ତ କରାଯାଇ-ପାରେ । ୧—ପ୍ରାଚୀନ ଆର୍ଯ୍ୟ, ୨—ମଧ୍ୟଭାରତୀୟ ଆର୍ଯ୍ୟ ଏବଂ ୩—ନବୀନ ଭାରତୀୟ ଆର୍ଯ୍ୟ ଭାଷା ବା ପ୍ରାନ୍ତୀୟ ଭାଷାର ଉଦ୍ଭବ । ମୋଟାମୋଟିରେ ସଂସ୍କୃତଭାଷା ପରେ ଖ୍ରୀଷ୍ଟପୂର୍ବ ୬୦୦ରୁ ଖ୍ରୀଷ୍ଟାବ୍ଦ ୧୦୦୦ ପର୍ଯ୍ୟନ୍ତ ମଧ୍ୟଭାରତୀୟ ଆର୍ଯ୍ୟରେ ପାଲି, ପ୍ରାକୃତ, ଅପ-ଭ୍ରଂଶ ଭାଷାର ସୃଷ୍ଟି ହୋଇଥିଲା । ଖ୍ରୀଷ୍ଟାବ୍ଦ ନବମ-ଦଶମ ଶତାବ୍ଦୀର ଅପଭ୍ରଂଶ ରଚନା 'ବୌଦ୍ଧଗାନ ଓ ଦୋହା' ଓଡ଼ିଆ ସାହିତ୍ୟର ଆଦିକାଳ ଭାବରେ ଗୃହୀତ । ବୌଦ୍ଧଗାନ ଦୋହାର ରଚନାକୁ ବଂଗଳା, ଅସମୀୟା, ମୈଥିଳୀ, ହିନ୍ଦୀ ପ୍ରଭୃତି ସାହିତ୍ୟର ପ୍ରଥମ ରଚନା ବୋଲି ସ୍ୱ ସ୍ୱ ଦେଶର ଆଲୋଚକମାନେ ମଧ୍ୟ ଦୃଢ଼ ମତ ଦେଇଛନ୍ତି । ସେହିପରି ବିଜୟଚନ୍ଦ୍ର ମଜୁମଦାର, ପଣ୍ଡିତ ବିନାୟକ ମିଶ୍ର, ଡାଃ ଆର୍ତ୍ତବଲ୍ଲଭ ମହାନ୍ତି, ଡାଃ କରୁଣାକର କର ପ୍ରଭୃତି ଚର୍ଯ୍ୟାଗୀତିକାରେ ବ୍ୟବହୃତ ଶବ୍ଦ, ନାମକରଣ, ବାକ୍ୟଗଠନ

ପ୍ରଣାଳୀ, ବିଭକ୍ତିପ୍ରତ୍ୟୟ ଇତ୍ୟାଦିରୁ ଏହା ଓଡ଼ିଆ ସାହିତ୍ୟର ପ୍ରାଚୀନତମ ନିଦର୍ଶନ ବୋଲି ଦୃଢ଼ ମତ ଦେଇଛନ୍ତି ଯଥା:—

"ଯେଯେ ଆଇଲା ତେତେ ଗେଲା
ଅବଣା ଗବଣେ କାହ୍ନୁ ବିମନ ଭଇଲା ।"

ଅନ୍ୟ—

"ନଗର ବାହିରେ ଡୋମ୍ବୀ ତୋହରି କୁଡ଼ିଆ
ଛୁଇଁ ଛୁଇଁ ଯାଇ ସୋ ବ୍ରାହ୍ମଣ ନାଡ଼ିଆ ।"

ଉଦ୍ଧୃତାଂଶରେ 'କାହ୍ନୁ'ଙ୍କ ଅନ୍ୟ ସପ୍ତମୀ ବିଭକ୍ତି 'ରେ' ବାକ୍ୟଗଠନରେ ନଗର ବାହିରେ ଇତ୍ୟାଦିରୁ ଓଡ଼ିଆ ସାହିତ୍ୟର ନିଜସ୍ୱ ସମ୍ପଦର ପରିଚୟ ମିଳିଥାଏ ।

ଚର୍ଯ୍ୟାଗୀତିକା ପରେ ୧୨ଶ ଶତାବ୍ଦୀରେ ନାଥଧର୍ମାବଲମ୍ବୀଙ୍କ ବିରଚିତ 'ଶିଶୁବେଦ' ଦେଖିବାକୁ ମିଳେ । ଅମରକୋଷ ଗୀତା ପାଣ୍ଡୁଲିପିରେ ଅଛି—

"ବନ୍ଦଇଁ ଆଦିନାଥ ଗୋରେଖ ଧାରିଆଁ
ବନ୍ଦଇଁ ମଛ ଦେଲି ନାଥ ଅନନ୍ତ ଦଇସ୍ତୁଁ ।
ବନ୍ଦଇଁ ଚଉରଂଗୀନାଥ ନିତ୍ୟକର୍ମଧାସ୍ତି
ବନ୍ଦଇଁ ଗୋରେଖନାଥ ବ୍ରହ୍ମବସ୍ତି ।"

ଏହାବ୍ୟତୀତ ଆଉ କେତେକ ବ୍ରତ କଥା, ରୁଦ୍ରସୁଧାନିଧି ଇତ୍ୟାଦି ରଚନା ମିଳୁଥିଲେ ହେଁ ଓଡ଼ିଆ ସାହିତ୍ୟର ସମୃଦ୍ଧ ରଚନା ଦେଖିବାକୁ ମିଳେ ନାହିଁ । ପଞ୍ଚଦଶ ଶତାବ୍ଦୀରେ ଯେଉଁ ଯୁଗଜନ୍ମା ମହାପୁରୁଷଙ୍କୁ ଦେଖିବାକୁ ମିଳେ, ସେ ହେଉଛନ୍ତି ମାଟିର ମହାକବି ସାରଳା ଦାସ । ସେହିଁ ସର୍ବପ୍ରଥମେ ବିଶାଳ ମହାଭାରତ ଗ୍ରନ୍ଥ,

ବଳଙ୍କ ରାମାୟଣ ଓ ଚଣ୍ଡୀପୁରାଣ ଇତ୍ୟାଦି ରଚନା କରି ଓଡ଼ିଆ ସାହିତ୍ୟସୌଧର ଦୃଢ଼ ଭିତ୍ତି ସ୍ଥାପନ କଲେ । ମାତ୍ର ସଂକଳକ ଶ୍ରୀଯୁକ୍ତ ମହାନ୍ତି ସାରଳା ପୂର୍ବବର୍ତ୍ତୀ ରଚନା ହିସାବରେ ବତ୍ସ-ଦାସଙ୍କ 'କଳସା ଚଉତିଶା'କୁ ପ୍ରଥମେ ସ୍ଥାନ ଦେଇଛନ୍ତି । ଅଧ୍ୟାପକ ଶ୍ରୀଯୁକ୍ତ ବଂଶୀଧର ମହାନ୍ତି ମଧ୍ୟ ସାରଳା ମହାଭାରତରେ ଉଲ୍ଲେଖ ଥିବା—'ବେଦମନ୍ତ୍ର ଯୁଗତେ ସେ ଯେ ପଢ଼ନ୍ତି କଳସା, ବଶିଷ୍ଠ ମାରକଣ୍ଡ ଆବର ଦୁର୍ବାସା'—ପଦ ପ୍ରତି ଲକ୍ଷ୍ୟ ରଖି କଳସା ଚଉତିଶା ସାରଳାଙ୍କ ପୂର୍ବବର୍ତ୍ତୀ ରଚନା ବୋଲି ମତ ଦିଅନ୍ତି । ମାତ୍ର ଭାଷା ଦୃଷ୍ଟିରୁ ବିଚାର କଲେ ଏହା ସମୀଚୀନ ମନେହୁଏ ନାହିଁ । ସାରଳା ଦାସଙ୍କ ସମସାମୟିକ ରାଜକବି କପିଳେଶ୍ୱର ଦେବଙ୍କ ଦ୍ୱାରା ସଂସ୍କୃତରେ ରଚିତ 'ପର୍ଶୁରାମ ବିଜୟ' ନାମକ ଏକାଙ୍କିକା (ବ୍ୟାୟୋଗ ରେ ଥିବା ଓଡ଼ିଆ ଗୀତଟି ଏଥିରେ ସଂଯୋଜିତ ହୋଇଛି । କପିଳେନ୍ଦ୍ର ଦେବଙ୍କ ପରେ କବି ଦାମୋଦର ଦାସଙ୍କ ରସକୁଲ୍ୟା ଚଉତିଶାକୁ ସଂଯୋଜନା କରାଯାଇଛି । ଏଥିରେ କାବ୍ୟର ଦୃଷ୍ଟି ଥିବା ସ୍ଥଳେ ପୌରାଣିକ ପରିବେଶ ଲକ୍ଷିତ ହୁଏ ନାହିଁ । ତେଣୁ ଏହା ପଞ୍ଚସଖା ପରବର୍ତ୍ତୀ ଏବଂ ଭଞ୍ଜଙ୍କ ପୂର୍ବବର୍ତ୍ତୀ ରଚନା ବୋଲି କୁହା ଯାଇପାରେ । ଏହାପରେ ସଂକଳୟିତା ୧୯୮୦ ଖ୍ରୀଷ୍ଟାବ୍ଦରୁ ୧୫୪୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ରଚିତ ଅର୍ଜୁନ ଦାସଙ୍କ 'ରାମବିଭା' କାବ୍ୟର ଚୂର୍ଣ୍ଣାୟିତ ଖଣ୍ଡ 'ତାଡ଼କାବଧ'କୁ ଗ୍ରହଣ କରିଅଛନ୍ତି । ଏହା ପ୍ରଥମ ଛନ୍ଦୋବଦ୍ଧ କାବ୍ୟ ଭାବରେ ଗୃହୀତ । ପଞ୍ଚଦଶ ଶତାବ୍ଦୀର ଶେଷଭାଗ ବା ଷୋଡ଼ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ରଚିତ ବୃଦ୍ଧ ଚମ୍ପତିରାୟଙ୍କ କାଳୀ ବର୍ଣ୍ଣନା ଓ ବନ୍ଦନା, ହରିହର ବନ୍ଦନା, ଆର୍ଯ୍ୟ ବନ୍ଦନା, ବଳରାମ ଦାସଙ୍କର ଦାଣ୍ଡିରାମାୟଣରୁ ହରଧନୁ ଭଙ୍ଗ, ଜଗନ୍ନାଥ ଦାସଙ୍କର ଭାଗବତ 'ଏକାଦଶସ୍କନ୍ଧ-ଦଶମ

ଅଧ୍ୟାୟରୁ ଅବଧୂତ ଯଦୁରାଜ ସଂବାଦ, ଶିଶୁଶଙ୍କର ଦାସଙ୍କର ଉଷାଭିଳାଷ କାବ୍ୟର ଦ୍ୱାଦଶ ଛାନ୍ଦ, ଦେବଦୁର୍ଲ୍ଲଭ ଦାସଙ୍କର ରହସ୍ୟମଞ୍ଜରୀ କାବ୍ୟର 'ଋତୁ ବର୍ଣ୍ଣନା, ବୃନ୍ଦକବି (୧୫୯୯-୧୬୦୯), ଯଦୁପତି ଦାସ (୧୬୦୫-୧୬୩୫)ଙ୍କର କ୍ଷୁଦ୍ର କବିତା ଓ କାର୍ତ୍ତିକ ଦାସଙ୍କର (୧୬୦୦-୧୬୫୦), ରୁକ୍ମଣୀ ବିଭାର ପ୍ରଦୋଷ ବର୍ଣ୍ଣନା ଏଥିରେ ସଂକଳକ ସ୍ଥାନ ଦେଇଛନ୍ତି ।

ମୋଟ ଉପରେ ୧୪୩୫ ଖ୍ରୀଷ୍ଟାବ୍ଦରୁ ଆରମ୍ଭ କରି ୧୬୫୦ ଖ୍ରୀଷ୍ଟାବ୍ଦ—ଏହି ଅଢ଼େଇଶହ ବର୍ଷର କବିମାନଙ୍କର ରଚନା ବା ଓଡ଼ିଆ ସାହିତ୍ୟ ଆକାଶରେ ସାରଳା ଦାସଙ୍କ ଅପର ଦିଗରେ କବିସମ୍ରାଟ ଉପେନ୍ଦ୍ର ଭଂଜଙ୍କ ପୂର୍ବଭାଗରେ ଥିବା ଓଡ଼ିଆ ସାହିତ୍ୟର ଭାଷାର କ୍ରମିକ ବିବରଣୀ, ଧାର୍ମିକ ପରଂପରା, ସାମାଜିକ ଚଳଣି ଇତ୍ୟାଦିକୁ ସ୍ପଷ୍ଟରୂପେ ବିଶ୍ଳେଷଣ କରାଯାଇପାରେ ।

## ସାମାଜିକ ପୃଷ୍ଠଭୂମି:—

ସିଦ୍ଧକବି ସାରଳାଙ୍କ ପରେ ଓଡ଼ିଆ କାବ୍ୟସାହିତ୍ୟ ଦ୍ୱିଧା ବିଭକ୍ତ ହୋଇଥିବାର ଜଣାଯାଏ ।

୧—ଧର୍ମଭିତ୍ତିକ ପୌରାଣିକ ସାହିତ୍ୟ

୨—ସେହି ପୁରାଣରୁ ବିଷୟବସ୍ତୁ ନେଇ କାବ୍ୟିକ ରୂପ ଦେବା ।

ଏଥିପାଇଁ ମୁଖ୍ୟତଃ ଓଡ଼ିଶାର ଧାର୍ମିକ ଆନ୍ଦୋଳନ ଏବଂ ସାମାଜିକ ପରିସ୍ଥିତି ଉଭୟେ ଦାୟୀ । ୧୫୧୦ ଖ୍ରୀଷ୍ଟାବ୍ଦରେ ଚୈତନ୍ୟଦେବ ଓଡ଼ିଶାକୁ ଆସିଲେ । ସେ ଥିଲେ ପ୍ରେମଭକ୍ତିର ଉପାସକ । ତେଣୁ ଉତ୍କଳୀୟ ବୈଷ୍ଣବକବିମାନେ ବା ପଞ୍ଚସଖା

ବଳରାମ, ଜଗନ୍ନାଥ ପ୍ରମୁଖ ସିଦ୍ଧ ସାଧକଗଣ ଜଗନ୍ନାଥଙ୍କୁ କେନ୍ଦ୍ର କରି ଧର୍ମଭିତ୍ତିକ ତତ୍ତ୍ୱସମ୍ବଳିତ ସାହିତ୍ୟ ରଚନା କଲେ । ସେମାନଙ୍କର ଲକ୍ଷ୍ୟ ଥିଲା—ନିଜ ନିଜ ଦେଶରେ ଅଶିକ୍ଷା ଅନ୍ଧକାରରେ ନିପତିତ ହୋଇଥିବା ଲୋକଙ୍କୁ ଶିକ୍ଷାଦାନ ଏବଂ ନୈତିକ ଆଦର୍ଶରେ ଜାତିକୁ ଐକ୍ୟବଦ୍ଧ କରାଇବା । ଅପରପକ୍ଷରେ ମଧ୍ୟ ମନୋରଞ୍ଜନକାରୀ ସାହିତ୍ୟର ସୃଷ୍ଟି ହେଲା । କାରଣ ପ୍ରଥମେ ୧୫୬୮ରେ ଓଡ଼ିଶାର ଶେଷ ସ୍ୱାଧୀନ ଗଜପତି ମୁକୁନ୍ଦଦେବ ଗୋହିରାଟିକିରୀ ଯୁଦ୍ଧରେ ନିହତ ହେବା ପରେ ଓଡ଼ିଶାରେ ପଠାଣ ଏବଂ ମୋଗଲ ରାଜତ୍ୱ ଆରମ୍ଭ ହୋଇଛି । ଫଳରେ ପଠାଣ ଏବଂ ମୋଗଲଙ୍କ ସଂସ୍କୃତି, ଭାଷା ଇତ୍ୟାଦିର ପ୍ରଭାବ ଓଡ଼ିଶାରେ ପଡ଼ିଛି । ଏତଦ୍‌ଭିନ୍ନ ସଂସ୍କୃତ-ସାହିତ୍ୟର ଆଙ୍ଗିକ ତଥା ଆତ୍ମିକ ଆଦର୍ଶରେ ପ୍ରତ୍ୟେକ ପ୍ରାନ୍ତୀୟ ସାହିତ୍ୟର ଲେଖକମାନେ ଅନୁପ୍ରାଣିତ ହୋଇ ସ୍ୱ ସ୍ୱ ସାହିତ୍ୟରେ ସେହି ପରୀକ୍ଷା ଚଳାଇଛନ୍ତି । ଦୃଷ୍ଟାନ୍ତସ୍ୱରୂପ ସଂସ୍କୃତ ସାହିତ୍ୟରେ ଛନ୍ଦୋବଦ୍ଧ ରଚନାରୀତି, ରସ, ଗୁଣ, ଅଳଂକାର, ସଙ୍ଗୀତ, ଭାଷା ଇତ୍ୟାଦି ମଧ୍ୟ ଲେଖକମାନେ ତ୍ୟାଗ କରିପାରି ନାହାନ୍ତି ।

ସଂସ୍କୃତସାହିତ୍ୟର ସମସ୍ତ ରସ ମଧ୍ୟରେ ଶୃଙ୍ଗାରରସ ବା ଆଦିରସ ଥିଲା ଶ୍ରେଷ୍ଠ ରସ ।

"ଶୃଙ୍ଗାରୀଚେତ୍ କବିଃ କାବ୍ୟଂ ରସମୟଂ ଜଗତ୍ ।"

( ସାହିତ୍ୟଦର୍ପଣ )

ତେଣୁ ପ୍ରାକ୍ ଭଞ୍ଜସାହିତ୍ୟରେ ଏହି ଶୃଙ୍ଗାରୀଚେତନା ପ୍ରାଧାନ୍ୟ-ଲାଭ କରିଥିଲେ ହେଁ ବଚ୍ଛା ଦାସଙ୍କର 'କଳସା ଚଉତିଶା'ରେ ହାସ୍ୟ ଓ କରୁଣରସର ପ୍ରୟୋଗ ତାକୁ ସ୍ୱତନ୍ତ୍ର ଆସନରେ ଆସୀନ କରାଇଛି ।

କୃଷ୍ଣପୂରେ ବିଭିନ୍ନ ସମ୍ପ୍ରଦାୟରେ ଧର୍ମର ବିବର୍ତ୍ତନ ମଧ୍ୟ ଘଟିଛି । ଶୈବ, ବୌଦ୍ଧ ଓ ଜୈନ, ବ୍ରାହ୍ମଣ୍ୟ, ଶାକ୍ତ, ସୌର ଇତ୍ୟାଦି ପଞ୍ଚଦେବ ଉପାସନାର ଚିତ୍ର ସାରଳା ସାହିତ୍ୟରେ ରହିଛି । ତେଣୁ ସାରେଳୋତ୍ତର ସାହିତ୍ୟରେ ବୃଦ୍ଧ ଚମ୍ପତିରାୟଙ୍କ ବିଭିନ୍ନ ବନ୍ଦନାରେ ବୌଦ୍ଧ, ଶୈବ, ଶାକ୍ତ ଇତ୍ୟାଦି ଦେବତାଙ୍କର ଅର୍ଚ୍ଚନାର ପରିଚୟ ମଧ୍ୟ ମିଳେ । ଏତଦ୍‌ଭିନ୍ନ ସ୍ୱକୀୟା, ପରକୀୟା ଭେଦରେ ରାମ, କୃଷ୍ଣଙ୍କୁ ନେଇ କାବ୍ୟକବିତା ସୃଷ୍ଟି ହୋଇଥିବା ଜଣାଯାଏ । ଉଦାହରଣ ସ୍ୱରୂପ, ବଳରାମ ଦାସଙ୍କର ଦାଣ୍ଡି ରାମାୟଣ, ଅର୍ଜ୍ଜୁନ-ଦାସଙ୍କ ରାମବିଭା ଇତ୍ୟାଦିରେ ରାମଙ୍କର ସ୍ତୁତି ହୋଇଥିବାବେଳେ ଶିଶୁଶଙ୍କରଙ୍କର ଉଷାଭିଳାଷ, ଦାମୋଦର ଦାସଙ୍କର ରସକୁଲ୍ୟା ଚଉତିଶା ଇତ୍ୟାଦିରେ କୃଷ୍ଣଙ୍କ ମହତ୍ତ୍ୱ ପ୍ରକଟିତ ହୋଇଛି ।

## ବିଷୟବସ୍ତୁରେ ସାମାଜିକ ଚିତ୍ର:—

ସାରଳା ମହାଭାରତର ଆଦିପର୍ବରେ 'ଏକଲବ୍ୟର ଅସ୍ତ୍ରଶିକ୍ଷା' ଓ 'ଗୁରୁଦକ୍ଷିଣା' ସ୍ଥାନ ପାଇଛି । ଏକ ଲକ୍ଷ ବାଇଶି ହଜାର ପଦରୁ ଅଧିକ ବିରାଟ ସାରଳା ମହାଭାରତରୁ ମାତ୍ର ଶହେ ତିରିଶଟି ପଦର ନମୁନା ଏଥିରେ ଅଛି । ପ୍ରଥମଟି ମହାଭାରତରେ ଚଉତିରିଶ ପଦ ଥିବା ସ୍ଥଳେ ଏଥିରେ କତିଶ ପଦ ଏବଂ ଦ୍ୱିତୀୟଟି ଅଠାନବେ ପଦବିଶିଷ୍ଟ । ପ୍ରଥମ ଉପାଖ୍ୟାନରେ ଜାରଶବର ବା ଏକଲବ୍ୟର ଧନୁର୍ବିଦ୍ୟା ଶିକ୍ଷା ଲାଗି ପ୍ରବଳ ଆଗ୍ରହ । ମାତ୍ର କୌରବଙ୍କଠାରୁ ଅପମାନିତ ହୋଇ ପ୍ରତ୍ୟାବର୍ତ୍ତନ କରିବା ପରେ ପତ୍ନୀ ର ଉପଦେଶରେ

('ଅଣଗୁରୁରେ ବିଦ୍ୟା ନୋହଇ ପ୍ରାପତ
ମୂର୍ଖ ପାମର ତୁ ବନଚରଜାତ ।');

ଅସାଧାରଣ ଗୁରୁଭକ୍ତି ଜାତ କରି ସାଧନାରେ ସିଦ୍ଧିଲାଭ କରିଛି । ଉଦ୍ଧବଙ୍କୁ ଉପାଖ୍ୟାନରେ—ଗୁରୁ ଦ୍ରୋଣାଚାର୍ଯ୍ୟ ପତ୍ନୀ କୃପୀଙ୍କ ଶ୍ରାଦ୍ଧରେ ଗଣ୍ଡା ଶିକାର କରିବାକୁ ଯାଇଥିବା କୌରବମାନେ ତାଙ୍କର ପତ୍ନୀ ସାରିଆ ପ୍ରତି ଅତ୍ୟାଚାର କରିବାକୁ ଉଦ୍ୟତ ହେବାବେଳେ ତାଙ୍କ ସହିତ ସେମାନଙ୍କର ସଂଗ୍ରାମ ଏବଂ ମୂର୍ଚ୍ଛିତ ଅବସ୍ଥାରେ କୌରବମାନେ ଭୂଲୁଣ୍ଠିତ, ଅର୍ଜୁନଙ୍କ ସହ ସଂଗ୍ରାମ-ବେଳେ ଦ୍ରୋଣାଚାର୍ଯ୍ୟଙ୍କ ସହ ତାଙ୍କର ପରିଚୟ ଏବଂ ସର୍ବୋପରି ତାଙ୍କର ନିଷ୍କପଟ ଗୁରୁଭକ୍ତିର ବର୍ଣ୍ଣନା ହୃଦୟଗ୍ରାହୀ ହୋଇପାରିଛି । ଗୁରୁଦକ୍ଷିଣା ସ୍ୱରୂପ ନିଜର ଦକ୍ଷିଣ ହସ୍ତର ବୃଦ୍ଧାଙ୍ଗୁଷ୍ଠି ପ୍ରଦାନ କରି ଗୁରୁ ଦ୍ରୋଣଙ୍କ ଅପେକ୍ଷା ପାଠକର ଅଧିକ ସମର୍ଥନ ଓ ସମ୍ମାନ ସେ ପାଇପାରିଛି ।

ଉକ୍ତ ବିଷୟରୁ ତତ୍କାଳୀନ ସମାଜର ଗୁରୁଭକ୍ତିର ପରିଚୟ ମିଳେ । ସମାଜରେ କେବଳ ପତ୍ନୀ ସହଧର୍ମିଣୀ ନ ହୋଇ ସହକର୍ମିଣୀ ଥିଲେ ବୋଲି ମଧ୍ୟ ପରିଚୟ ମିଳେ । ବର୍ଣ୍ଣିତ ଚରିତ୍ରରେ ଅତି ମାନବିକତା ନାହିଁ ।

ବଳରାମଦାସଙ୍କ କଳସା ଚଉତିଶାରେ ବର୍ଣ୍ଣିତ ଶିବ-ପାର୍ବତୀଙ୍କ ବିବାହ ବୃତ୍ତାନ୍ତରେ ଓଡ଼ିଆ ସମାଜର ରୀତିନୀତି, ଚାଲିଚଳଣିର ହୃଦୟସ୍ପର୍ଶୀ ଆଲେଖ୍ୟ ରୂପ ପାଇଛି । କଳସା ଚଉତିଶା ବ୍ୟତୀତ କବି ଦାମୋଦର ଦାସଙ୍କ କୃଷ୍ଣପ୍ରେମମୂଳକ 'ରସକୁଲ୍ୟା ଚଉତିଶା'କୁ ମଧ୍ୟ ଏଥିରେ ସଂଯୋଜନା କରାଯାଇଛି । ରାଧାଙ୍କର ବିରହ, ନବାନୁରାଗ, ଉତ୍କଣ୍ଠା, ଉଦ୍‌ବେଗ ଏବଂ ଦୂତୀଦ୍ୱାରା ପରସ୍ପରର ମିଳନ ଦ୍ୱାରା ଶ୍ରୀ ରାଧିକାଙ୍କର ମାନସିକ ଅବସ୍ଥାର ଯଥାଯଥ ଚିତ୍ର ସେ ପ୍ରଦାନ କରିଛନ୍ତି । ଏହି ଚଉତିଶାରୁ ସ୍ପଷ୍ଟ ଜଣାପଡ଼େ, ଓଡ଼ିଆ

“ଦଇମା କର କହୁଛି ଶୁଣ ମୋର ମାଏ
ଦନ୍ତେ ତିରଣ ଧରିଣ ଓଳଗଇ ପାଏ
ଦରିଦ୍ର ହୀନ ବୁଢ଼ାକୁ ଯେବେ ମୋତେ ଦେବୁ
ଦୁଇ ନୟନରେ ମୋର ମରଣ ଦେଖିବୁ ।”

ଉକ୍ତ ବର୍ଣ୍ଣନାରେ ତତ୍କାଳୀନ ସମାଜରେ କନ୍ୟାସୁନା ଦେବାର ବିଧି ପ୍ରଚଳିତ ଥିଲା ବୋଲି ଜଣାଯାଏ ।

ଗଜପତି କପିଳେନ୍ଦ୍ରଦେବଙ୍କ 'ପର୍ଶୁରାମ ବ୍ୟାୟୋଗ' ସଂସ୍କୃତ ଏକାଂକିକାରୁ ଆଦୃତ ଏହି ଓଡ଼ିଆ ଗୀତଟିରେ ପର୍ଶୁରାମଙ୍କ ପିତା ଯମଦଗ୍ନି କୌଣସି ଜନୈକ ରାଜାଙ୍କ ଦ୍ୱାରା ନିହତ ହୋଇଥିବାରୁ ସେହି ରାଜାଙ୍କୁ ତିରସ୍କାର ପୂର୍ବକ ନିହତ କରିବା ଲାଗି ପର୍ଶୁରାମଙ୍କର ଉକ୍ତି ଏଥିରେ ପ୍ରକାଶ ପାଇଛି । ଉକ୍ତ ସଂଗୀତର ରାଗର ନାମ 'ଅମର ରାଗ' । ଏଥିରେ ଅଳଂକାରର ଆଭାସ ମିଳେ । ଯଥା:—

ଏ ତୋର ଚନ୍ଦ୍ରବଦନ
ମେଘ କ ଢାଙ୍କିଲ ଜହ୍ନ
ତାହା ଦେଖି ବିକଳ ମୋ ମନନା
ଆବର ଦେଖଇ ଅରିଷ୍ଟି
ରାଜ୍ୟେ ତୋ ରୁଧିର ବୃଷ୍ଟି
ପୁର ବେଢ଼ି ଖେଦନ୍ତି ଶୃଗାଳନା ।

ଉଦ୍ଧୃତ ପଦଟିରେ ଚନ୍ଦ୍ରବଦନ ସହିତ ଜହ୍ନର ଓ ବିଷାଦ ଭାବ ସହିତ ମେଘର ତୁଳନା କରଯାଇ ଅଳଂକାରର ଆଭାସ ଦିଆଯାଇଛି । ସାରଳାପୂର୍ବୀୟ ଶୃଙ୍ଖଳାବଦ୍ଧ ସଙ୍ଗୀତମୟ ରଚନାର ଅଭାବ ପୂରଣ ଦିଗରେ ଏହା ମଧ୍ୟ ଏକ ପ୍ରଶଂସନୀୟ ଉଦ୍ୟମ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଉକ୍ତ ରଚନାରେ ତତ୍କାଳୀନ ସମାଜରେ ବ୍ରାହ୍ମଣ ଅବଧ୍ୟ ହେଉଥିବା ଚିନ୍ତାଧାରାର ପରିଚୟ ମିଳେ । କାରଣ ବ୍ରାହ୍ମଣକୁ ବଧ କଲେ ରାଜ୍ୟରେ ଅମଙ୍ଗଳ ହେଉଥିଲା ବୋଲି ଲୋକଙ୍କର ବିଶ୍ୱାସ ଥିଲା । ସର୍ବୋପରି ପିତୃହନ୍ତାର ପ୍ରତିଶୋଧ ନେବା ପୁଅର ଯେମିତି ପ୍ରଧାନ କର୍ତ୍ତବ୍ୟ ଥିଲା ।

ଅର୍ଜୁନ ଦାସଙ୍କ 'ରାମବିଭା' କାବ୍ୟର ତୃତୀୟ ଛାନ୍ଦରେ ଥିବା ତାଡ଼କା ବଧ ଉପାଖ୍ୟାନଟି ଏଥିରେ ଦିଆଯାଇଛି । ତାଡ଼କା ଅସୁରୁଣୀର ଅତ୍ୟାଚାରରେ ଋଷିମାନେ ଯାଗଯଜ୍ଞ କରିପାରି ନାହାନ୍ତି । ଶେଷରେ ବିଶ୍ୱାମିତ୍ର ରାମ ଲକ୍ଷ୍ମଣଙ୍କୁ ଆଣିଛନ୍ତି । ରାମଚନ୍ଦ୍ର ତାଡ଼କାକୁ ନିହତ କରି ଋଷିମାନଙ୍କର ଆନନ୍ଦ ବର୍ଦ୍ଧନ କରିଛନ୍ତି ।

ରାମବିଭା କାବ୍ୟଟି ଓଡ଼ିଆ ସାହିତ୍ୟର ପ୍ରଥମ ଛନ୍ଦୋବଦ୍ଧ କାବ୍ୟ । ତାଡ଼କା ବଧ ରାଗର ନାମ ରାମକେଶୀ । ପଣ୍ଡିତ ବିନାୟକ ମିଶ୍ର ଏହାକୁ ବଳରାମଙ୍କ ରଚନା ବୋଲି ମତ ଦେଇଥିଲେ । ମାତ୍ର ଯୁକ୍ତିସିଦ୍ଧ ଆଲୋଚକ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ଅର୍ଜୁନ ଦାସଙ୍କର ବୋଲି ପ୍ରମାଣିତ କରିଛନ୍ତି । ଉକ୍ତ ରଚନାରେ ବୀର ରସର ପ୍ରବାହ ଓ ପ୍ରକୃତିର ମଞ୍ଜୁଳ ବର୍ଣ୍ଣନା ପରିଦୃଷ୍ଟ ହୁଏ । କବିଙ୍କ ମତରେ ଜଗନ୍ନାଥ ଅବତାରୀ ଓ ସେ ରାମଚନ୍ଦ୍ର ରୂପରେ ଜନ୍ମଗ୍ରହଣ କରିଥିଲେ । ଗଂଗାଇ ପକ୍ଷୀ ମତ୍ସ୍ୟ ଲୋଭରେ ଉଡ଼ିଆସି ଜଳରେ ବୁଡ଼ି ମତ୍ସ୍ୟ ନେଇ ପୁଣି ଯେପରି ଡାଳକୁ ଉଡ଼ିଯାଇ ବସି ଖାଏ, ସେହିପରି ରାମଚନ୍ଦ୍ରଙ୍କର ମନ୍ତ୍ରପୂତ ଶର ତାଡ଼କାକୁ ନିହତ କରି ରାମଚନ୍ଦ୍ରଙ୍କ ପାଖକୁ ଫେରିଯାଇଥିଲା । କବି ଏଠାରେ ସୁନ୍ଦର ଭାବରେ ଗଂଗାଇ ଚଢ଼େଇର ଉପମା ସାହାଯ୍ୟରେ ମନ୍ତ୍ରପୂତ ବାଣକୁ

ତୁଳନା କରିଛନ୍ତି (୨୪ ପଦ ଦ୍ରଷ୍ଟବ୍ୟ) । ଉକ୍ତ ରଚନାରେ ତତ୍କାଳୀନ ସମାଜରେ ମନ୍ତ୍ର ତନ୍ତ୍ରର ପ୍ରୟୋଗ ଦେଖିବାକୁ ମିଳେ ।

ବୃଦ୍ଧ ଚମ୍ପତିରାୟ ତିନିଜଣ ଦେବାଦେବୀ; ଯଥା:—କାଳୀ, ହରିହର ଓ ବଧିକାଙ୍କର ବର୍ଣ୍ଣନା ତଥା ବନ୍ଦନା କରିଛନ୍ତି । ଏଥିରୁ ବିଭିନ୍ନ ରାଗରାଗିଣୀର ପରିଚୟ ମିଳେ । ଗଜପତି ଶ୍ରୀ ପୁରୁଷୋତ୍ତମଦେବ ଅନ୍ନପୂର୍ଣ୍ଣା ପାଟମହାଦେବୀଙ୍କୁ ବିଜୟ କାରଣାର୍ଥେ ତାଙ୍କର ଚିତ୍ତକୁ ରଞ୍ଜନ କରିବା ନିମନ୍ତେ ଲଳିତପଦବନ୍ଧ 'ହରିହର ବିଳାସ' କାବ୍ୟ ବୃଦ୍ଧ ଚମ୍ପତିରାୟ ରଚନା କରିଥିଲେ ବୋଲି ବନ୍ଦନାତଳେ ଏକ ଟିପ୍ପଣୀରୁ ଏହା ଜଣାଯାଏ । ତେଣୁ କବିଙ୍କ ରଚନାବଳୀ ପଞ୍ଚଦଶ ଶତାବ୍ଦୀର ଶେଷଭାଗ ବୋଲି ନିରୂପଣ କଲେ ଅଯୌକ୍ତିକ ହେବ ନାହିଁ ।

ତତ୍କାଳୀନ ଉତ୍କଳରେ ବିଭିନ୍ନ ଧର୍ମର ଉପାସନା ଥିଲା ବୋଲି ଜଣାଯାଏ । ଏହା ମାତ୍ରାବୃତ୍ତ ଛନ୍ଦରେ ରଚିତ ।

ବଳରାମ ଦାସଙ୍କର 'ଦାଣ୍ଡୀ ରାମାୟଣ'ରେ ଥିବା ହରଧନୁଭଙ୍ଗ ପ୍ରସଙ୍ଗ ଏଥିରେ ବର୍ଣ୍ଣିତ । ଏଥିରେ ବକ୍ତା ଶିବ ଓ ଶ୍ରୋତା ପାର୍ବତୀ । ଶିବ ପାର୍ବତୀଙ୍କୁ ଶ୍ରୀରାମଙ୍କର ହରଧନୁଭଙ୍ଗ ପ୍ରସଙ୍ଗ କହୁଛନ୍ତି । କବିଙ୍କ ମନରେ ରାମଚନ୍ଦ୍ର ନରରୂପୀ ନାରାୟଣ ନ ହୋଇଥିଲେ ଏପରି ଧନୁକୁ ଭଗ୍ନ କରିବା କଷ୍ଟ । ଧନୁ ଭଗ୍ନ କଲେ ସେ ରାଜର୍ଷି ଜନକ ଦୁହିତା ସୀତାଙ୍କୁ ପ୍ରାପ୍ତି ହେବେ । ଶେଷରେ ବାଳକ ରାମଚନ୍ଦ୍ର ଧନୁ-ଭଗ୍ନ କରନ୍ତି ।

ବଳରାମ ଦାସଙ୍କର ଦାଣ୍ଡୀ ରାମାୟଣ ମୂଳ ସଂସ୍କୃତ ବାଲ୍ମୀକି ରାମାୟଣର ଆକ୍ଷରିକ ଅନୁବାଦ ନୁହେଁ । ଅନୁବାଦ ସମ୍ପର୍କରେ

ସମାଲୋଚକ କହନ୍ତି—Translation is like a beautiful woman. It may be faithful or beautiful but seldom remain both in one.'' କବିଗଣ ନିଜ କଳ୍ପନା-ଶକ୍ତି ବଳରେ ଏହିପରି ବିଭିନ୍ନ ଉପାଖ୍ୟାନ ସଂଯୋଗ କରି ତାଙ୍କର ରଚନାକୁ ଅଳଙ୍କୃତ କରି ଛାଡ଼ିଛନ୍ତି । ଯାହାର ପରବର୍ତ୍ତୀ କାଳରେ ଧନଞ୍ଜୟ ଭଞ୍ଜଙ୍କ 'ରଘୁନାଥବିଳାସ'ଠାରୁ ଆରମ୍ଭ କରି ଉପେନ୍ଦ୍ର ଭଞ୍ଜଙ୍କ 'ବୈଦେହୀଶବିଳାସ' କାବ୍ୟ ପର୍ଯ୍ୟନ୍ତ ଏହାର ପ୍ରଭାବ ପଡ଼ିଛି ।

ଉକ୍ତ ରଚନାରେ ଧନୁର କଥାବାର୍ତ୍ତା, ବସୁଧା କଥାବାର୍ତ୍ତା ଇତ୍ୟାଦି ବର୍ଣ୍ଣନାରେ ଅତି ଲୌକିକତା ପ୍ରକାଶ ପାଇଛି । ଏହାହିଁ ପୁରାଣ ରଚନାର ନିୟମ ଥିଲା । ଏତଦ୍‌ଭିନ୍ନ ପାଣ୍ଡିତ୍ୟ ସେତେବେଳେ ଶ୍ରୋତାଙ୍କ ପାଇଁ ଉଦ୍ଦିଷ୍ଟ ଥିବାରୁ କାବ୍ୟ ବର୍ଣ୍ଣନା ପ୍ରଧାନ ଥିଲା । ଏହାହିଁ ଶିବ-ପାର୍ବତୀଙ୍କ ଉକ୍ତି ପ୍ରତ୍ୟୁକ୍ତିରୁ ଜଣାଯାଏ । ସମାଜରେ ସେତେବେଳେ କନ୍ୟାର ବିବାହ ପାଇଁ ସ୍ୱୟମ୍ବର ପ୍ରଚଳିତ ଥିଲାବୋଲି ଜଣାଯାଏ ।

ସେହିପରି ଜଗନ୍ନାଥ ଦାସଙ୍କର ଭାଗବତର ଏକାଦଶସ୍କନ୍ଧ ଦଶମ ଅଧ୍ୟାୟରେ ଥିବା ଅବଧୂତ ଯଦୁରାଜା ସମ୍ବାଦରେ—ଅବଧୂତ ସାଂସାରିକ ମାୟା ବିଷୟ ବର୍ଣ୍ଣନା କରି ଏଥିରୁ ମୁକ୍ତ ହୋଇ ଭଗବାନଙ୍କ ନିକଟରେ ନିଜକୁ ସମର୍ପଣ କରିବାଲାଗି କପୋତ ପକ୍ଷୀର ଅଭ୍ୟାସ, ଶିଶୁର ପରାପରହୀନତା, ବିପ୍ରକନ୍ୟା କଙ୍କଣୀନାଦରୁ ମୁକ୍ତ ହେବାଲାଗି ସମସ୍ତ କାଚ ହାତରୁ ବାହାର କରିଦେବା, ଶର-ସନ୍ଧାନକାରୀର ନିର୍ଦ୍ଦିଷ୍ଟ ଲକ୍ଷ୍ୟ, ସର୍ପ କୌଣସି ଗୋଟିଏ ସ୍ଥାନକୁ ଆପଣାର ବିବର ନ କରିବା ଉଦାହରଣ ଦେଇ—ଏ ସମସ୍ତକୁ

ଗୁରୁରୂପେ ମାନ ସଂସାରବନ୍ଧନରୁ ମୁକ୍ତ ହୋଇଥିବା ବର୍ଣ୍ଣନା କରିଛନ୍ତି ।

ଭାଷା ସହଜ ଓ ସରଳ । ପ୍ରାକୃତିକ ରୂପକ ପ୍ରୟୋଗ ହେତୁ ଏହା ଖୁବ୍ ବାସ୍ତବଧର୍ମୀ ହୋଇପାରିଛି । ଏଥିରେ ପୁନର୍ଜନ୍ମବାଦର ବିଶ୍ୱାସ ଅଛି ।

ଅର୍ଜୁନ ଦାସଙ୍କ ରାମବିଭା ପରେ ଶିଶୁଶଙ୍କରଙ୍କ 'ଉଷା-ଭିଳାଷ'ର ଦ୍ୱାଦଶ ଛାନ୍ଦ, ଦେବଦୁର୍ଲ୍ଲଭ ଦାସଙ୍କର ରହସ୍ୟମଞ୍ଜରୀର ଋତୁ ବର୍ଣ୍ଣନା ଓ ବୈଷ୍ଣବକବି କାର୍ତ୍ତିକ ଦାସଙ୍କର 'ରୁକ୍ମିଣୀବିଭା'ର ଷଷ୍ଠ ଛାନ୍ଦରେ ଥିବା 'ଚଂଦ୍ରୋଦୟ ବର୍ଣ୍ଣନା' ଇତ୍ୟାଦିରୁ କାବ୍ୟ-ସାହିତ୍ୟର ବିକାଶଧାରା ଜଣାଯାଇଥାଏ । ଉଷାଭିଳାଷରେ କୃଷ୍ଣଙ୍କର ନାତି ଶାମ୍ବଙ୍କର ପୁତ୍ର ଅନିରୁଦ୍ଧ ବାଣା କନ୍ୟା ଉଷାଙ୍କ ସହ ଗୁପ୍ତ-ପ୍ରଣୟରେ ଲିପ୍ତ ଥିବାରୁ ବାଣାଙ୍କ ଦ୍ୱାରା ବନ୍ଦୀ ହୋଇଛନ୍ତି । ନାରଦଙ୍କଠାରୁ ଏ ସମ୍ବାଦ ପାଇ କୃଷ୍ଣ ବାଣାର ରାଜ୍ୟକୁ ଆକ୍ରମଣ କରିଛନ୍ତି । ଫଳରେ ବାଣାର ଆରାଧ୍ୟ ଦେବ ଶିବଙ୍କ ସହ କୃଷ୍ଣଙ୍କର ଯୁଦ୍ଧ ହୋଇଛି । ଶେଷରେ ଅପର୍ଣ୍ଣାଙ୍କର ଅନୁରୋଧରେ କୃଷ୍ଣ ବାଣାର ଦୁଇବାହୁ ରଖି ଅନ୍ୟ ସମସ୍ତ ବାହୁ ଛେଦନ କରି ଅନିରୁଦ୍ଧ-ଉଷାଙ୍କୁ ବିବାହ କରାଇ ଫେରିବାର ଦୃଶ୍ୟକୁ କବି ଚମତ୍କାର ଭାବରେ କାବ୍ୟିକ ରୂପ ପ୍ରଦାନ କରିଛନ୍ତି । ଉକ୍ତ କାବ୍ୟର ପ୍ରଭାବ ଉପେନ୍ଦ୍ରଙ୍କ ଲାବଣ୍ୟବତୀରେ ପଡ଼ିଥିବା ଜଣାଯାଏ । କବି ଭାଗବତ ଓ ହରିବଂଶରୁ କଥାବସ୍ତୁ ଆହରଣ କରି ଏ କାବ୍ୟ ରଚନା କରିଛନ୍ତି । ଏଥିରୁ ତତ୍କାଳୀନ ସମାଜରେ ଶିବଭକ୍ତ ଏବଂ କୃଷ୍ଣଭକ୍ତ ମଧ୍ୟରେ ଧର୍ମର ସଂଘର୍ଷ ଏବଂ ସମୋପରି ହରିହରଙ୍କର ମିଳନଚିତ୍ର ଚର୍ଚ୍ଚିତ ହୋଇଛି । ନାୟକନାୟିକା ପରସ୍ପରକୁ ଭଲପାଇ ବିବାହ

କରିଥିବାର ଚିତ୍ର ମିଳେ । ସଙ୍ଗୋପରି ବିବାହ ପୂର୍ବରୁ ନାୟକ-ନାୟିକାଙ୍କର ମିଳନ ପ୍ରଦର୍ଶୀୟ ନୁହେଁ ବୋଲି କବିଙ୍କର ସାମାଜିକ ଚେତନା ଏଥିରେ ରୂପ ପାଇଛି ।

ଦେବଦୁର୍ଲଭ ଦାସଙ୍କ ରହସ୍ୟମଞ୍ଜରୀରେ କୃଷ୍ଣ ବସ୍ତ୍ରହରଣ ମଥୁରାରେ ରହିଯିବାରୁ ଗୋପାଙ୍ଗନା ନିଜର ମାନସଜାତ ଗାୟତ୍ରୀ-କନ୍ୟାଙ୍କୁ ସେମାନଙ୍କର ବିରହଜନିତ ଦୁର୍ଦ୍ଦଶା ଜଣାଇବା ଲାଗି କୃଷ୍ଣଙ୍କ ନିକଟକୁ ପଠାଇଛନ୍ତି । କଥିତ ଷଡ଼ଋତୁ ବର୍ଣ୍ଣନାରେ ରାଧାଙ୍କ ମାନସକନ୍ୟା ମୂର୍ଚ୍ଛଣୀ କୃଷ୍ଣଙ୍କ ସମ୍ମୁଖରେ ଋତୁବର୍ଣ୍ଣନା ପ୍ରସଙ୍ଗରେ ରାଧାଙ୍କ ବିରହ ଅବସ୍ଥା ବର୍ଣ୍ଣନା କରିଛନ୍ତି । ଏଥିରେ ଆଲଂକାରିକ ବର୍ଣ୍ଣନାର ଚିତ୍ର ରହିଛି । ଉକ୍ତ ଋତୁବର୍ଣ୍ଣନାରୁ ଜଣାଯାଏ, ତତ୍କାଳୀନ ସମାଜର କବିମାନେ ସଂସ୍କୃତସାହିତ୍ୟର ଆଦର୍ଶ ଅନୁସରଣରେ ପ୍ରକୃତିକୁ ନାୟକ ନାୟିକାଙ୍କର ଉଦ୍ଦୀପନ ବିଭାଗ ସୃଷ୍ଟି ଲାଗି ବର୍ଣ୍ଣନା କରୁଥିଲେ । ସାଂପ୍ରତିକ ଯୁଗ ପରି ପ୍ରକୃତି ସ୍ୱତନ୍ତ୍ର ପର୍ଯ୍ୟାୟବାଚୀ ନ ଥିଲା । ସଂସ୍କୃତସାହିତ୍ୟରେ ଭର୍ତ୍ତୃହରିଙ୍କ ଶୃଙ୍ଗାରଶତକରେ ମଧ୍ୟ ଏହିପରି ବର୍ଣ୍ଣନା ଥିବାର ଦେଖାଯାଏ । ଏହି ପ୍ରକୃତି ବର୍ଣ୍ଣନାର ମୂଳ ଉତ୍ସ 'ଋଗ୍' ବେଦରେ ମଧ୍ୟ ଦେଖିବାକୁ ମିଳେ । ଋଗ୍ ବେଦରେ ଯେଉଁ 'ଋଭୁ'ମାନଙ୍କର ବର୍ଣ୍ଣନା କରାଯାଇଛି, ତାହାହିଁ ପ୍ରକୃତିର ବର୍ଣ୍ଣନା ।

'ରହସ୍ୟମଞ୍ଜରୀ' କାବ୍ୟର ନାମକରଣରେ ମଧ୍ୟ ସ୍ୱତନ୍ତ୍ରତା ଦେଖାଯାଏ । ସଂସ୍କୃତ ସାହିତ୍ୟ ତଥା ଓଡ଼ିଆ ପ୍ରାକ-ରୀତିଯୁଗର ସାହିତ୍ୟରେ କବିମାନେ ନାୟକନାୟିକାଙ୍କ ନାମ ଅନୁସାରେ କାବ୍ୟର ନାମକରଣ କରୁଥିବା ବେଳେ; ଧନକୃଷ୍ଣଙ୍କର ରସ-

କଲ୍ଲୋଳ, ଭଞ୍ଜଙ୍କ କଳାକୌତୁକ ପରି ଦେବଦୁର୍ଲଭ ପ୍ରଥମେ ତାଙ୍କ କାବ୍ୟରେ ସ୍ୱତନ୍ତ୍ର ନାମକରଣ କରିଛନ୍ତି ।

ପତି ହେଉଛନ୍ତି ପତ୍ନୀର ଚିରକାଳ ଆରାଧ୍ୟ ଦେବତା । ତେଣୁ ପତି ଖାଇବା ପୂର୍ବରୁ ସ୍ତ୍ରୀ ନ ଖାଇବା ଏବଂ ପତିର ଅଧରାମୃତ ପାନରେ ପତ୍ନୀ ସୌଭାଗ୍ୟ ମଣିବା ଇତ୍ୟାଦିର ସୁନ୍ଦର ସାମାଜିକ ଚିତ୍ର ଏଥିରେ ରୂପ ପାଇଛି ।

କାର୍ତ୍ତିକ ଦାସଙ୍କ ରଚିତ 'ରୁକ୍ମଣୀବିଭା'ରେ ବିଦର୍ଭରାଜ-ନନ୍ଦିନୀ ଅପରୂପ ରୂପସୀ ରୁକ୍ମଣୀଙ୍କୁ ଭ୍ରାତା ରୁକ୍ମଣର ଷଡ଼ଯନ୍ତ୍ରରୁ ମୁକ୍ତ କରିବା ଲାଗି କୃଷ୍ଣ ଓ ବଳରାମ ଆସି ବିଦର୍ଭ ରାଜ୍ୟସୀମାରେ ଶିବିର ସ୍ଥାପନ କରିବା ସମୟରେ ସନ୍ଧ୍ୟା ସମାଗତ ହୋଇଛି । ସେତିକିବେଳେ ବିଭିନ୍ନ ଉପମା ଓ ରୂପକ ସାହାଯ୍ୟରେ କବି ପୂର୍ଣ୍ଣିମାରାତିର ମନୋମୁଗ୍ଧକର ବର୍ଣ୍ଣନା କରିଛନ୍ତି । ବିଷୟବସ୍ତୁ ଉପସ୍ଥାପନାରେ କବି ଭାଗବତ, ହରିବଂଶ, ପଦ୍ମପୁରାଣର ସାହାଯ୍ୟ ନେଇଛନ୍ତି ।

ଶେଷରେ ରାଜକବିଙ୍କଠାରୁ ଆରମ୍ଭ କରି ବୃନ୍ଦାବତୀ, ଦାମୋଦର ଚମ୍ପତିରାୟ ଓ ଯଦୁପତି ଦାସଙ୍କ କେତେକ କ୍ଷୁଦ୍ର କବିତାରେ ରାମ, କୃଷ୍ଣ ଓ ଜଗନ୍ନାଥଙ୍କ ବନ୍ଦନା, ଶ୍ରୀରାଧାଙ୍କ ମନୋଭାବ ବର୍ଣ୍ଣନା ଇତ୍ୟାଦି ମାଧ୍ୟମରେ ବିଭିନ୍ନ ରାଗରାଗିଣୀର ପରିଚୟ ମିଳିଥାଏ । ତତ୍କାଳୀନ ସମାଜରେ ସଙ୍ଗୀତ ବିଦ୍ୟାର ଧୀରେ ଧୀରେ ଆଦର ପାଉଥିବା ଉକ୍ତ ରଚନାରୁ ଜଣାଯାଏ ।

ପ୍ରାଚୀନ ପଦ୍ୟାଦର୍ଶରୁ ଏହିପରି ଓଡ଼ିଶାର ପୁରାଣ ରଚନା, ଛନ୍ଦୋବଦ୍ଧ କାବ୍ୟ, ସଂଗୀତ ଏବଂ କ୍ଷୁଦ୍ର କବିତାର ବିକାଶ

ଦେଖାଯାଏ । ଏତଦ୍‌ଭିନ୍ନ ଦାଣ୍ଡୀବୃତ୍ତରେ ରଚିତ ମହାଭାରତ, ବଳରାମଙ୍କ ଦାଣ୍ଡୀ ରାମାୟଣ ଓ ଗର୍ଭଗୀତା ଗଦରେ ଲିଖିତ ଜଗନ୍ନାଥ ଦାସଙ୍କ ଭାଗବତ ଏବଂ ବୃଦ୍ଧ ଚମ୍ପତିରାୟଙ୍କ ପ୍ରୟୋଗ 'ମାହାବୃତ୍ତ-ଛନ୍ଦ'ରୁ ଧୀରେ ଧୀରେ କାବ୍ୟରେ ଛନ୍ଦର ବିକାଶ ଦେଖାଯାଏ । ଏହାବ୍ୟତୀତ ସମାଜରେ ଧାର୍ମିକ ଆନ୍ଦୋଳନ ସହ ସମାଜଚିତ୍ର ପ୍ରାୟ ପ୍ରତ୍ୟେକ ରଚନାରେ ରହିଛି ।

**ସାଂସ୍କୃତିକ ଚିତ୍ର:—**

୧—ସମାଜରେ ସ୍ୱୟଂବର ପ୍ରଥା ପ୍ରଚଳିତ ଥିଲା ।

୨—ଧର୍ମର ମିଳନ ସଂଘଟିତ ହୋଇଥିଲା ।

୩—ରାଜଦରବାରରେ ବିଭିନ୍ନ ଦେଶର କବିଙ୍କୁ ସମ୍ମାନିତ କରାଯାଉଥିଲା । ଉଦାହରଣ ସ୍ୱରୂପ ଗୀତକବି ଓଡ଼ିଆ ରାଜାଙ୍କ (ରାମଚନ୍ଦ୍ର ଦେବ) ଦରବାରରେ ସ୍ଥାନ ଓ ସମ୍ମାନ ପାଇଥିଲେ ।

ଗୀତକବିଙ୍କ ବର୍ଣ୍ଣିତ ବିଷୟବସ୍ତୁରେ ଇନ୍ଦ୍ର ଓ କୃଷ୍ଣଙ୍କ କଳହ ସମ୍ବନ୍ଧରେ ଜଣାଯାଏ ଯେ, ଆର୍ଯ୍ୟ ଏବଂ ବୈଦିକ ଆର୍ଯ୍ୟ ମଧ୍ୟରେ ସଂଘର୍ଷ ଏବଂ ପରେ ପରସ୍ପରର ମିଳନ ସଂଘଟିତ ହୋଇଥିଲା । ଇନ୍ଦ୍ର ବୈଦିକ ଆର୍ଯ୍ୟ ଥିଲେ (ନାଥଧର୍ମ—ଡଃ ହୋଳଗୋବିନ୍ଦ ଶାସ୍ତ୍ରୀ) ଏବଂ ଭାରତୀୟ ଆର୍ଯ୍ୟ କୃଷ୍ଣଙ୍କୁ ତତ୍କାଳୀନ ସମାଜରେ ସାତଜଣ ରାଜା ସମ୍ମିଳିତ ଭାବରେ ପରାସ୍ତ କରିଥିଲେ (ଗୀତାର ମୁଖବନ୍ଧ—ପଣ୍ଡିତ ନୀଳକଣ୍ଠ ଦାସ) । ତେଣୁ ଏଥିରୁ ଜଣାଯାଏ, ଭାରତୀୟ ଆର୍ଯ୍ୟନେତା କୃଷ୍ଣଙ୍କ ଦ୍ୱାରା ବୈଦିକ ଆର୍ଯ୍ୟନେତା ଇନ୍ଦ୍ର ପରାସ୍ତ ହୋଇ ଶେଷରେ ପରସ୍ପରର ସଂସ୍କୃତିକୁ ଗ୍ରହଣ କରି ନେଇଛନ୍ତି ।

## ଭାଷା:—

ସାରଳା ଦାସଙ୍କ ରଚନାରେ ଗ୍ରାମ୍ୟଭାଷାର ବହୁଳ ବ୍ୟବହାର ଦେଖାଯାଏ । ଏହା ଦାଣ୍ଡୀବୃତ୍ତରେ ଲିଖିତ ହୋଇଥିବାରୁ ଏଥିରେ ପ୍ରତ୍ୟେକ ଧାଡ଼ିର ଅକ୍ଷର ସଂଖ୍ୟା ଠିକ୍ ନାହିଁ । ଏଥିରେ ଦ୍ୱିତୀୟା ବିଭକ୍ତି 'କୁ' ସ୍ଥାନରେ 'କଇ', ପ୍ରଥମପୁରୁଷ ଏକବଚନରେ 'ଏ' ସ୍ଥାନରେ 'ଇ' (ଖାଅଇ, ଯାଅଇ)ର ପ୍ରୟୋଗ ଦେଖିବାକୁ ମିଳେ । ଦ୍ୱିତୀୟା ବିଭକ୍ତିରେ କାରୁଣାବନ୍ତ କଇଂ, ସଂସ୍କୃତ ତୃତୀୟା ବିଭକ୍ତି ଏକବଚନରେ 'ନରେଣ' ରୂପ ହେବାପରି 'ନଥାଏଣ' ରୂପ ହୋଇଛି ।

ଗ୍ରାମ୍ୟ ଶବ୍ଦ; ଯଥା:—ହେର (ଦେଖି), ସ୍ନାହାନ (ସ୍ନାନ), ସଙ୍ଗତନୁ (ସଙ୍ଗତନୁଜ), ଗଦର ଗଦର (ଅସ୍ପଷ୍ଟ), ଭୁକୁ ମୁକୁ (ଛୋଚେ ମୋଚେ), ହାଦେ (ନିଶ୍ଚେ) ।

ଶବ୍ଦ ସଂକୋଚନ ହେତୁ 'ଯୁଧିଷ୍ଠିର' ସ୍ଥାନରେ 'ଯୁଜେଷ୍ଠି'' ଶବ୍ଦ ସଂପ୍ରସାରଣ ହେତୁ 'ପ୍ରତାପେ' ସ୍ଥାନରେ 'ପରତାପେ', 'ଯ୍ବ' ଶ୍ରୁତି ହେତୁ 'ରାଧେକ' ସ୍ଥାନରେ 'ରାଧେଯ୍ବ', ମହାପ୍ରାଣର ପ୍ରଭାବ ହେତୁ ସଂଗାତ ସ୍ଥାନରେ 'ସଂଘାତ' ଏବଂ ମହାପ୍ରାଣ ସ୍ଥାନରେ ଅଳ୍ପପ୍ରାଣର ବ୍ୟବହାର ହେତୁ 'ପାଦ ଗତ କର' ସ୍ଥାନରେ 'ପାଆ କର' ଇତ୍ୟାଦିର ପ୍ରୟୋଗ ହୋଇଛି ।

କଳସା ଚଉତିଶାରେ ମଧ୍ୟ କଥିତ ଶବ୍ଦର ପ୍ରୟୋଗ ପରିଦୃଷ୍ଟ ହୁଏ । ଯଥା:—ଖୁଁ ଖୁଁ ଖାସ, ସାହାସେଣ, ଧଇଂ, ଚକେରା, ଲେଉଟଇ, ଭେଳକ, ଝୁଙ୍କି, ଝକଝକ, ଟଳମଳ, ଝାକରା, ଝର୍ମାଖୀ, ଅଚ୍ଛିଁତ, ନକୁଟିଣ ଇତ୍ୟାଦି । ଏହା ବ୍ୟତୀତ 'ଫରମାଣ' (ଭୁଜା-

ଆଜ୍ଞା) ଶବ୍ଦଟି ଏକ ଯାବନିକ ଶବ୍ଦ ବୋଲି ମନେହୁଏ । ତେଣୁ ମୁସଲମାନ ଶାସନକାଳରେ ଅର୍ଥାତ୍ ୧୫୬୮ ପରେ ବଚ୍ଛା ଦାସଙ୍କର ସମସ୍ତ ବୋଲି ମନେହୁଏ । ମାତ୍ର ସାରଳାଦାସଙ୍କ କାବ୍ୟରେ ଯାବନିକ ଶବ୍ଦର ପ୍ରୟୋଗ ନ ଥିବାରୁ କଳସା ଚଉତିଶା ସାରଳାଙ୍କ ପୂର୍ବବର୍ତ୍ତୀ ହେବା ଅସମ୍ଭବ । ଏହାବ୍ୟତୀତ ଉଭୟ ରଚନାରୁ ମଧ୍ୟ ଉଦାହରଣ ନେଇ ଦେଖିଲେ ସାରଳାଙ୍କ ଭାଷା ଅପେକ୍ଷା ବଚ୍ଛା ଦାସଙ୍କର ଭାଷା ଅର୍ବାଚୀନ ବୋଲି ମନେହୁଏ ।

ଯଥା:– ସାରଳାଙ୍କର ଦ୍ରୌପଦୀଙ୍କ ବର୍ଣ୍ଣନା—

"କନ୍ୟାକୁ ସ୍ନାହାନ କରାନ୍ତି ସର୍ବେ ମିଳି
ନାନା ସୁଗନ୍ଧେଣ କବରୀହର ସମ୍ଭାଳି
କୁଙ୍କୁମ ଲେପନ କରଣ ଶରୀରେ
ମୃଗନାଭି କସ୍ତୁରୀ ଲେପନ ହୃଦୟରେ
ଆଲଟ ଗୃମର ଡାଳି ସୁଖାବନ୍ତି କେଶ
ଅଂଗେ ପରିଧାନ କରନ୍ତି କ୍ଷୀନବାସ
ଯାଇ, ଯୂଇ, ମଲ୍ଲୀ, ମାଳତୀ, ସେବତୀ ପାଟୁଳି
ସୁବାସ କୁସୁମ ସଂଯୋଇଲେ କବରୀ
ସୁସଞ୍ଚ ଖୋସା ଗୋଟି ସାଞ୍ଜୋଇ ଅତି ରସେ
ଲୁବୁଧେ ମଧୁକରେ କୁରୁଳୁଛନ୍ତି ପାଖେ ।"

କଳସା ଚଉତିଶାରେ ବିବାହ ପୂର୍ବରୁ ପାର୍ବତୀଙ୍କ ବର୍ଣ୍ଣନା—

ଯାଇଫୁଲ କଣ୍ଠିଆର ଖୋସାରେ ଖୋସିଲେ
ଯତନେ କସ୍ତୁରୀଟୋପା କପାଳରେ ଦେଲେ
ରତ୍ନ ଓଡ଼ିଆଣୀ ଚୂଡ଼ି ମଥାରେ ସୀମନ୍ତ
ଭାମ ଅଭିଷେକ ଚୂଡ଼ି ନାଶେ ଗଜମୋତି

ରୁଣୁଝୁଣୁ ବାଜୁଅଛୁ ପୟରେ ନୂପୁର
ଭାଗାବ ଦଳ ଲୋଚନେ ରଞ୍ଜିଲେ କଜ୍ଜ୍ବଳ
ଲତାବଳୀ ଘାଟେ ପିନ୍ଧି ନେତ ଜୁପୁଭାଣ
ଲାବଣ୍ୟ ଚନ୍ଦ୍ରବଦନୀ ଲକ୍ଷେ ଲକ୍ଷ୍ମୀଗୁଣ ।"

ପର୍ଶୁରାମ ବ୍ୟାପ୍ତୋଗ ସଂଗୀତର ଭାଷା ସରଳ, ଶୈଳୀ ସ୍ୱତନ୍ତ୍ର ଓ ଅଳଂକାରର ଆଭାସ ମିଳେ ।

ଉପକୁଲ୍ଲୀ ଚଉତିଶାର ଭାଷା କଳସା ଚଉତିଶାର ଭାଷା ଅପେକ୍ଷା କ୍ଳିଷ୍ଟ ଏବଂ ଅଳଂକାରପୂର୍ଣ୍ଣ । ଏଥିରେ ଦେଶଜ ଶବ୍ଦ ସହିତ ସଂସ୍କୃତ ଶବ୍ଦର ସମନ୍ୱୟ ହୋଇଛି । ପ୍ରାକୃତରେ 'ଧ<ଢ' ହୁଏ । ତେଣୁ କବି ସେହି ନିୟମରେ ରାଧା ସ୍ଥାନରେ 'ରାହି' ଶବ୍ଦ ବ୍ୟବହାର କରିଛନ୍ତି ।

ସଂସ୍କୃତ ଶବ୍ଦ – ଶରକୋଦଣ୍ଡ, କୁବଳୟଫଳ, ଚନ୍ଦ୍ରଶେଖର ଇତ୍ୟାଦି ।

ଦେଶଜ ଶବ୍ଦ—ଘାଉ<ଘାତ, ବାଜେ<ବଜାଏ, ଘାଉଆ< ଘାତପ୍ରାପ୍ତ ।

ରାମବିଭାରେ ଦେଶଜ ଶବ୍ଦ ସହ ସଂସ୍କୃତ ଶବ୍ଦର ମଧ୍ୟ ସମ୍ମିଶ୍ରଣ ହୋଇଛି ।

ଦେଶଜ – କୁମ୍ଭଳ<କୁମ୍ଭାର, ହାଲହୋଳ<କୋଳାହଳ, ହୁରିଜଞ୍ଜିର<ଗୋଳମାଳ, ରଘୁନାଥ<ରଘୁନନ୍ଦନ, ବିଶ୍ୱାମଇଚ< ବିଶ୍ୱାମିତ୍ର ।

ସଂସ୍କୃତ – ଜଙ୍ଗମ, ତୂଣୀର ଇତ୍ୟାଦି ।

ବୃନ୍ଦ ଚମ୍ପତିରାୟଙ୍କ ବିଭିନ୍ନ ବନ୍ଦନାର ଭାଷା ମାର୍ଜିତ ଓ ସଂସ୍କୃତ ଶବ୍ଦବହୁଳ । ଦାଣ୍ଡୀ ରାମାୟଣର ଭାଷା ସରଳ ଓ

ବୋଧଗମ୍ୟ । ଏଥିରେ ପ୍ରଚଳିତ ଦେଶଜ ପ୍ରୟୋଗ ଦେଖାଯାଏ । ଯଥା:—ଶାକମ୍ଭରୀ, ମଞ୍ଜୁଷା, ଜଳୁଡ଼ି, ଘ୍ରାଣ, ଉଷତ ଇତ୍ୟାଦି ।

ବହୁବଚନରେ ଦ୍ୱିତ୍ୱ ପ୍ରୟୋଗ—ରାଜାଗଣମାନେ ।

ଭାଗବତରେ ସଂସ୍କୃତ ଦେ ସନ୍ଧିତ କଥିତ ଦେଶର ମଧୁର ସମନ୍ୱୟ ହୋଇଛି । କଥିତ ଦେ—ଫେଇଲ, ଅକଂଅନ, କୁରଳି, ଶରକୁଟ ଇତ୍ୟାଦି ।

'ଲକ୍ଷାଭିଳାଷ' କାବ୍ୟର ଭାଷା ପରିମାର୍ଜିତ ଓ ପ୍ରସାଦପୂର୍ଣ୍ଣ । ଏଥିରୁ ଓଡ଼ିଆ ଭାଷାର ଶୁଦ୍ଧ ବର୍ଣ୍ଣନା ଜଣାଯାଏ । 'ରହସ୍ୟମଞ୍ଜରୀ'ରେ ସଂସ୍କୃତ ଦେ ସନ୍ଧିତ କଥିତ ଦେଶର ସମନ୍ୱୟ ଦେଖାଯାଏ । 'ରୁକ୍ମିଣୀବିଭା'ର ଭାଷା ଅପେକ୍ଷାକୃତ କ୍ଲିଷ୍ଟ । ଏତଦ୍‌ଭିନ୍ନ ଦାମୋଦର ଦାସ, ବୃନ୍ଦକବି, ଯଦୁପତି ଦାସଙ୍କ କ୍ଷୁଦ୍ର ସଂଗୀତରେ ଆମେ ବିଭିନ୍ନ ରାଗରାଗିଣୀ ସହଜ ଓ ସରଳ ଭାବରେ ରଚିତ ହୋଇଥିବାର ପରିଚୟ ପାଉ ।

ଶେଷରେ ଏତିକି କହିଲେ ଯଥେଷ୍ଟ ହେବ ଯେ ମଧ୍ୟ-ଯୁଗରେ ସଂକଳିତ ୧୪ଟି କବିତାରୁ ପ୍ରାପ୍ତ ଅଢ଼େଇ ଶହ-ତିନିଶହ ବର୍ଷର ଅଣିତ ଉତ୍କଳର ସାମାଜିକ ଚିତ୍ର ମିଳିବା ସଙ୍ଗେ ସଂଗେ ଭାଷାସାହିତ୍ୟର କ୍ରମବିକାଶର ସୂଚନା ଦେଖାଯାଏ । ମଧ୍ୟାଦର୍ଶର ସଙ୍କଳନରେ ଯେଉଁ କେତେକ ସାମାନ୍ୟ ତ୍ରୁଟି ପରିଲକ୍ଷିତ ହୁଏ, ପରବର୍ତ୍ତୀ କାଳରେ ଭାଷାବିତ୍‌ମାନେ ଅନୁଧ୍ୟାନ କରି ଏହାକୁ ସଂଶୋଧନ କରିଦେବା ସଂଗେ ସଂଗେ ଓଡ଼ିଆ ସାହିତ୍ୟରେ ଚର୍ଚ୍ଚାର ଅନୁଶୀଳନ କଲେ ଆମେ ଆହୁରି ସତ୍ୟର ନିକଟବର୍ତ୍ତୀ ହୋଇପାରିବୁ ବୋଲି ଆଶା କରାଯାଏ ।

---

# ଓଡ଼ିଆ ସମର ସାହିତ୍ୟ

## ଶାନ୍ତି ଓ ସମର—

ଜଗତରେ କୌଣସି ଏକ ଅବସ୍ଥା ଚିରସ୍ଥାୟୀ ନୁହେଁ । ସର୍ବଥା ପରିବର୍ତ୍ତନ ପ୍ରକ୍ରିୟା ନିରବଚ୍ଛିନ୍ନ ଭାବେ ଚାଲି ଆସୁଛି । ସୃଷ୍ଟିର ପ୍ରାକ୍-କାଳରେ କି ଅବସ୍ଥା ଥିଲା ତାହା ଧାରଣାର ଅଗମ୍ୟ । ସେତେବେଳେ ଚିର ଶାନ୍ତି ବିରାଜମାନ ଥିଲା ବୋଲି କେତେକ ଦାର୍ଶନିକଙ୍କର କଳ୍ପନା । ସୃଷ୍ଟି ପ୍ରାରମ୍ଭରେ ସେହି ଆଦି ଶାନ୍ତି ଘଟନାକ୍ରମେ ତରଙ୍ଗ-ଦ୍ୱାରା ବିକ୍ଷୋଭିତ ହେଲା ଏବଂ ସେହି ଘଟନା ତରଙ୍ଗରୁ ଜଗତରେ ପ୍ରଥମ ସଂଗ୍ରାମର ଉତ୍ପତ୍ତି । ସେହିଦିନରୁ ଆଜି ପର୍ଯ୍ୟନ୍ତ ସନାତନ ସଂଗ୍ରାମ ଚାଲି ଆସୁଅଛି । ଜଳସ୍ଥଳ ମଧ୍ୟରେ, ଆଲୋକ-ଅନ୍ଧକାର ମଧ୍ୟରେ, ଦେବ-ରାକ୍ଷସ ମଧ୍ୟରେ, ସତ୍ୟ-ମିଥ୍ୟା ମଧ୍ୟରେ, ପାପ-ପୁଣ୍ୟ ମଧ୍ୟରେ ଓ ଧର୍ମ-ଅଧର୍ମ ମଧ୍ୟରେ ଅହରହ ସଂଗ୍ରାମ ଲାଗିଅଛି । ମଧ୍ୟେ ମଧ୍ୟେ ସଂଗ୍ରାମର ବିରାମ ଘଟୁଛି ସତ୍ୟ; ମାତ୍ର ଏ ବିରାମ ପରବର୍ତ୍ତୀ ସଂଗ୍ରାମ ନିମନ୍ତେ ଅବସର ମାତ୍ର । ପରବର୍ତ୍ତୀ ସଂଗ୍ରାମ ଅଧିକତର ଉତ୍କଟ ଏବଂ ଭୀଷଣ ହୋଇଅଛି । ସଂଗ୍ରାମ ପରେ ଶାନ୍ତି ଓ ଶାନ୍ତି ପରେ ସଂଗ୍ରାମ—ଏହାହିଁ ଜଗତର ନିୟମ । ମାତ୍ର ମାନବ-

ପ୍ରାଣ ଶାନ୍ତି ନିମନ୍ତେ ନିରନ୍ତର ପିପାସିତ । ଯୁଗେ ଯୁଗେ ମହା-ପୁରୁଷମାନେ ମାନବର ଏହି ସହଜ ପିପାସା ତୃପ୍ତି କରିବା ଲାଗି ଆଶା ଏବଂ ଆଶ୍ୱାସନାର ବାଣୀ ପ୍ରଚାର କରି ଆସିଛନ୍ତି । ମାତ୍ର ଆଶ୍ଚର୍ଯ୍ୟ ଯେ ମାନବ ଯାହା ଲୋଡ଼ୁଛି, ଯାହାଲାଗି ଏତେ ଉପଦେଶ ପ୍ରଚରିତ ହୋଇଅଛି, ତାହା ପୁଣି ମନୁଷ୍ୟ ନଷ୍ଟ କରୁଅଛି । ସେ ସେଚ୍ଛ ଶାନ୍ତି ଭଙ୍ଗ କରୁଅଛି ଏବଂ ଶାନ୍ତିଭଙ୍ଗ କ୍ରିୟାକୁ ମଧ୍ୟ ସମର୍ଥନ କରୁଅଛି । କହୁଅଛି—ଶାନ୍ତି ନିମନ୍ତେ ସଂଗ୍ରାମ । ଶୁଣିବାକୁ ଏହା ଆଶ୍ଚର୍ଯ୍ୟ ଲାଗିପାରେ । କିନ୍ତୁ ଏହା ଅସତ୍ୟ ନୁହେଁ । ଶାନ୍ତି ନିମନ୍ତେ ଶାନ୍ତିଭଙ୍ଗ, ସ୍ୱାର୍ଥ ନିମନ୍ତେ ସ୍ୱାର୍ଥ ତ୍ୟାଗ, କର୍ମ ନିମନ୍ତେ ଅକର୍ମ, ସନ୍ତୋଷ ନିମନ୍ତେ ଅସନ୍ତୋଷ—ଏହାହିଁ ମାନବ ନିମନ୍ତେ ବିଶ୍ୱ-ବିଧାତାଙ୍କର ନିୟମ । ସାମୟିକ ଶାନ୍ତିରେ ମନୁଷ୍ୟ ତୃପ୍ତ ନୁହେଁ, ପୁଣି ସାମୟିକ ଶାନ୍ତି ଶୈଥିଲ୍ୟ ଜନ୍ମାଏ, ବିଳାସିତା ଆଣେ । ସ୍ଥଳ-ବିଶେଷରେ ବେଳେବେଳେ ଅନ୍ୟାୟ, ଅତ୍ୟାଚାର ବଢ଼ାଏ ଓ ସ୍ଥିତିଶୀଳତାର ସହାୟକ ହୁଏ । ପରେ ଏହା କ୍ରମେ ଅସହ୍ୟ ହୋଇପଡ଼େ ଏବଂ ଶାନ୍ତିଭଙ୍ଗ ବା ସଂଗ୍ରାମର ପ୍ରୟୋଜନ ହୁଏ । ମାନବ ଲୋଡ଼େ ନିତ୍ୟ ଶାନ୍ତି—ଯେ ଶାନ୍ତି ବିଳାସିତା ଆଣେ ନାହିଁ, ବୈରାଗ୍ୟ ଦିଏ; ଶୈଥିଲ୍ୟ ଜନ୍ମାଏ ନାହିଁ—ସାଧନା ଓ ସିଦ୍ଧି ଦିଏ; ଅନ୍ୟାୟ ଓ ଅତ୍ୟାଚାର ବଢ଼ାଏ ନାହିଁ—ସତ୍ୟ ଏବଂ ନ୍ୟାୟର ପ୍ରତିଷ୍ଠା କରେ ଏବଂ ସ୍ଥିତି ସ୍ଥିର ରଖି ଉନ୍ନତିବିଧାନ କରେ ।

ଭାରତୀୟ ଆର୍ଯ୍ୟଗଣ ଶାନ୍ତିର ଚିର ଉପାସକ । ସେମାନଙ୍କର ଆରାଧ୍ୟ ଦେବତା—ଶ୍ୟାମଳଂ ଶାନ୍ତମୂର୍ତ୍ତି । ମାତ୍ର ଏହି ମୂର୍ତ୍ତି ସମୟରେ ପୁଣି ନୃସିଂହ ଓ ପରଶୁରାମ ଆଦି ଭୀମ ବେଶରେ ପ୍ରକାଶ ପାଇଛନ୍ତି, ଯୁଦ୍ଧ ବିଗ୍ରହ ଆରମ୍ଭ କରିଛନ୍ତି, ଧର୍ମସଂସ୍ଥାପନ କରି ଜଗତକୁ

ନିତ୍ୟ ଶାନ୍ତ ଆଡ଼କୁ କେତେକ ଦୂର ଅଗ୍ରସର କରାଇଛନ୍ତି, ଅବଶେଷରେ ପୁଣି ନିଜ ପ୍ରସନ୍ନ ଶାନ୍ତ ମୂର୍ତ୍ତି ଧାରଣ କରିଅଛନ୍ତି । ଯେଉଁ ବିରାଟ ବିଶ୍ୱଶକ୍ତିକୁ ହିନ୍ଦୁ ସୌମ୍ୟସିଦ୍ଧ ଭୁବନେଶ୍ୱରୀ ବେଶରେ ପୂଜା କରିଅଛି—ସେହି ପୁଣି ବିକଟ ଧୂମା ଭୃଙ୍ଗିମା ମହାକାଳୀ ରୂପରେ ମହାଶ୍ମଶାନରେ ନୃତ୍ୟରେ ଉନ୍ମତ୍ତ । ଏଠାରେ ସ୍ୱତଃ ପ୍ରଶ୍ନ ଉଠେ—ଏ ଭୀଷଣ ପରିବର୍ତ୍ତନ କାହିଁକି ?

"ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାଂ ।"—ସେହି ଶାନ୍ତିର ସ୍ଥାପନ ନିମନ୍ତେ ।

ସୃଷ୍ଟିର କୌଣସି ବସ୍ତୁ ଯେପରି ନିଷ୍ପ୍ରୟୋଜନ ନୁହେଁ, କୌଣସି ଘଟନା ସେହିପରି ନିରର୍ଥକ ନୁହେଁ । ଯାହା ମାନବ ପ୍ରାଣରେ ଘୋର ଆତଙ୍କ ଜନ୍ମାଏ, ଅଭାବନୀୟ ଅକଲ୍ୟାଣ ଘଟାଏ, ଉନ୍ନତି ପଥରେ ଅନ୍ତରାୟ ହୁଏ; ସେଥିରେ ଯେ କ ମଙ୍ଗଳ ନିହିତ, ତାହା କେବଳ ସେହି ସକଳ ମଙ୍ଗଳାଳୟଙ୍କୁ ଗୋଚର । ସମୂହ ମାନବର ଆକାଂକ୍ଷାହିଁ ବିଧାତାଙ୍କର ଇଚ୍ଛା । ସୁତରାଂ ଉକ୍ତ ଯୁଦ୍ଧ-ବିଗ୍ରହ ମଧ୍ୟରେ ତାଙ୍କର ମଙ୍ଗଳମୟ ଇଚ୍ଛା ପୂର୍ତ୍ତି ହେଉଛି ବୋଲି ମନେ କରିବାକୁ ହେବ ।

## ସମର ବିଳାସୀ ଓଡ଼ିଆ—

ଓଡ଼ିଆ ସମର ସାହିତ୍ୟ ଆଲୋଚନା କଲେ ଦେଖାଯାଏ ଯେ ସାହିତ୍ୟରେ ସମର ବିଷୟରେ ସେପରି କିଛି ଉଲ୍ଲେଖଯୋଗ୍ୟ ଘଟଣା ଲିପିବଦ୍ଧ ହୋଇ ନାହିଁ । ବୋଧହୁଏ ସେତେବେଳେ ସାହିତ୍ୟ ଉପରେ ସେପରି କିଛି ଗୁରୁତ୍ୱ ଦିଆଯାଉ ନ ଥିଲା କିମ୍ବା ସମର ବିଷୟ ଉଲ୍ଲେଖ କରିବାର ଆବଶ୍ୟକତା ଉପଲବ୍ଧି କରାଯାଇ

ନ ଥିଲା । ଅଥଚ ଶିଳାଲିପି, ତାମ୍ରପତ୍ର ପ୍ରଭୃତିରୁ ସ୍ପଷ୍ଟ ପ୍ରମାଣ ମିଳେ ଯେ, ଓଡ଼ିଆମାନେ ଅସୀମ ସାହସିକ ବୀର ଥିଲେ ଏବଂ ନିଜର ବାହୁବଳରେ ଆକୁମାରୀ ଗଙ୍ଗା ପର୍ଯ୍ୟନ୍ତ ରାଜ୍ୟଜୟ କରି ବିଶାଳ ସାମ୍ରାଜ୍ୟ ସ୍ଥାପନ କରିପାରିଥିଲେ ।

ଖାରବେଳଙ୍କ ସମୟର ହାତୀଗୁମ୍ଫା ଶିଳାଲେଖରୁ ଜଣାପଡ଼େ —"ରାଜତ୍ୱର ଅଷ୍ଟମ ବର୍ଷରେ ଖାରବେଳ ଯବନରାଜାଙ୍କୁ ଯୁଦ୍ଧରେ ପରାସ୍ତ କରିବା ପାଇଁ ମଥୁରା ପର୍ଯ୍ୟନ୍ତ ଅଗ୍ରସର ହୋଇ-ଥିଲେ । ମଥୁରାରେ ଥିବା କାଳରେ ସେ ସେଠାକାର ଅଧିବାସୀ, ରାଜଭୃତ୍ୟ, ବ୍ରାହ୍ମଣ, ଜୈନ ଓ ଶ୍ରମଣ (ଅରହତ ଶ୍ରମଣ)ମାନଙ୍କୁ ଆମୋଦ ପ୍ରମୋଦ ଓ ଭୋଜିରେ ଆପ୍ୟାୟିତ କରିଥିଲେ ।

ଉତ୍ତର ଭାରତରେ ସେତେବେଳେ ମଥୁରା ଜୈନଧର୍ମର କେନ୍ଦ୍ରସ୍ଥଳ ଥିଲା । ଜୈନ ଉପାସକ ଖାରବେଳଙ୍କ ପକ୍ଷରେ ତେଣୁ ମଥୁରାରେ 'ଯବନରାଜ'ର ଉପସ୍ଥିତି ଓ ଆଧିପତ୍ୟ ଅସହ୍ୟ ହୋଇଥିଲା । ମଥୁରାରୁ ଫେରିବା ସମୟରେ ଖାରବେଳ ଗୁଳ୍ମ ଓ ଲତାକୀର୍ଣ୍ଣ କଳ୍ପବୃକ୍ଷ କଳିଙ୍ଗକୁ ଆଣିଥିଲେ । ଜୈନଶାସ୍ତ୍ରରେ ଲିଖିତ ଅଛି ଯେ କେବଳ ଚକ୍ରବର୍ତ୍ତୀ ସମ୍ରାଟମାନେ ହିଁ କଳ୍ପବୃକ୍ଷ ରୋପଣ କରିବାକୁ ଯୋଗ୍ୟ ।"

ଖାରବେଳଙ୍କ ପୂର୍ବରୁ ଖ୍ରୀଷ୍ଟପୂର୍ବ ୨୬୨ରେ ଅଶୋକ କଳିଙ୍ଗ ଆକ୍ରମଣ କରିଥିଲେ । ଅଶୋକ ଆପଣାର ଅନୁଶାସନରେ ଉଲ୍ଲେଖ କରିଛନ୍ତି—"ଏ ଯୁଦ୍ଧରେ କଳିଙ୍ଗବାସୀ ଏକ ଲକ୍ଷ ସୈନ୍ୟ ବନ୍ଦୀ ହୋଇଥିଲେ, ଏକ ଲକ୍ଷ ପଚାଶ ହଜାର ସୈନ୍ୟ ଆହତ ଏବଂ ଏହାର ବହୁଗୁଣରେ ହତ ହୋଇଥିଲେ ।" କଳିଙ୍ଗବାସୀ ନିଜର ସ୍ୱାଧୀନତା ରକ୍ଷା ନିମନ୍ତେ ଏତେ ସାହସରେ ଯୁଦ୍ଧ କରିଥିଲେ ଯେ,

ଅଶୋକ ଜୟର୍ସ୍ତ ଥିଲେ ସୁଦ୍ଧା ସେହି ଦୃଶ୍ୟରେ ସେ ପ୍ରାଣରେ କଷ୍ଟ ଅନୁଭବ କରି ମନରୁ ଯୁଦ୍ଧପ୍ରବୃତ୍ତି ଛାଡ଼ିଦେଇଥିଲେ ଏବଂ ବୌଦ୍ଧଧର୍ମ ଗ୍ରହଣ କରିଥିଲେ । ତେଣୁ 'କଳିଙ୍ଗଃ ସାହସିକାଃ' ପ୍ରବାଦ ବାକ୍ୟ ସର୍ବତ୍ର ଗୃହୀତ ହୋଇଥିଲା ।

ଏ ସମସ୍ତ ଶିଳାଲିପି ଓ ଅନୁଶାସନ ବ୍ୟତୀତ ତତ୍‌କାଳୀନ ସମର ସାହିତ୍ୟ ବିଷୟରେ ବିଶେଷ କିଛି ଉଲ୍ଲେଖଯୋଗ୍ୟ ସାହିତ୍ୟ ମିଳେ ନାହିଁ । ମାତ୍ର ଇତିହାସରୁ ଜଣାଯାଏ ଯେ ଖ୍ରୀଷ୍ଟପୂର୍ବ ୨୬୧ରୁ ଖ୍ରୀଷ୍ଟାବ୍ଦ ୧୫୬୮ ପର୍ଯ୍ୟନ୍ତ ଦୀର୍ଘ ଅଠର ଶହ ବର୍ଷ ଧରି ଓଡ଼ିଆମାନେ ଯୁଦ୍ଧ ଓ ଦିଗ୍‌ବିଜୟରେ ବ୍ୟାପୃତ ଥିଲେ । ଏହି ସମୟ ମଧ୍ୟରେ ଉତ୍କଳ ସାମ୍ରାଜ୍ୟ ସମୟେ ସମୟେ ହିମାଳୟର ପାଦଦେଶରୁ ଦାକ୍ଷିଣାତ୍ୟ ଉପସାଗର ପର୍ଯ୍ୟନ୍ତ ମଧ୍ୟ ବିସ୍ତୃତ ଥିଲା । ଭାଟମାନେ ଉତ୍କଳୀୟ ରାଜାମାନଙ୍କର ଯେଉଁ କୀର୍ତ୍ତି ଗାନ କରୁଥିଲେ, ତହିଁରୁ ତାହାର କିଞ୍ଚିତ ଆଭାସ ମିଳିଥାଏ । ଯଥା:—

"ଶ୍ରୀ ଶ୍ରୀ ଗଜପତି ଗଉଡ଼େଶ୍ୱର, କର୍ଣ୍ଣାଟୀ କଲେବର, ବୀରାଧି ବୀରବର,. ମହାରେ ମହାପତି, ତଳେ ବସୁମତି, ଉପରେ ଧର୍ମ-ଦେବତା, କଳିଯୁଗ ଝଣ୍ଟା, ଝାଡ଼ପାତିଶା ଖଣ୍ଡା, ହସ୍ତୀରେ ଅମସ୍ତି, ଗୋଡ଼ରେ ସୁଆସ୍ତି, ବାହାରେ ବାଜବନ୍ଧ, ଡାହାଣେ କଟାରି, ଆଲଟ ଚାମର, ଢାଳ ତରୁଆର, ସ୍ୱରି ପାରୁଶରେ ଅନେକ ସେବାକାରୀ, ବୀରମାନଙ୍କ ଶିରୋମଣି, ଦେବଙ୍କ ମସ୍ତକେ ଖଡ଼ଗଧାର ପାଗ, ଶତ୍ରୁନ ରହେ ଆଗ -"ଇତ୍ୟାଦି ।

ଓଡ଼ିଆମାନେ ଯେ ବଡ଼ ବୀର ଜାତି ଥିଲେ, ତାହା ଆଜିରେ ଦଶହରା ପର୍ବରେ ଖଣ୍ଡାଖେଳ, ମଲ୍ଲଯୁଦ୍ଧ, ଲାଠିଖେଳ, ମୁଦ୍‌ଗର ବୁଲା ପ୍ରଭୃତିରୁ କିଞ୍ଚିତ ପ୍ରମାଣ ମିଳେ । ସେତେବେଳର ଅସ୍ତ୍ର ଥିଲା—

ଖଣ୍ଡା,ତରବାରି, ବର୍ଚ୍ଛା, ଭାଲ, ଧନୁଶର ଓ ପରଶୁ ପ୍ରଭୃତି । ସୈନିକମାନଙ୍କର କପାଳରେ ସିନ୍ଦୂର କଳା, ଗାଲମୁଛ, ମୁଣ୍ଡରେ ପଗଡ଼ି ଥିଲା । ତହିଁରେ ଏରପଷୀ ବା ମୟୂରର ଚନ୍ଦ୍ରିକା ଖୋସା-ଯାଇଥିଲା । ଓଡ଼ିଶାରେ ବର୍ତ୍ତମାନ ପ୍ରଚଳିତ ବଂଶପରମ୍ପରାଗତ ପଦବୀରୁ ମଧ୍ୟ ଓଡ଼ିଆମାନଙ୍କ ବୀରତ୍ୱର ସୂଚନା ମିଳେ । ଏଗୁଡ଼ିକ ରାଜଦତ୍ତ ପଦବୀ । ଯଥା:— ଭାଉତରାୟ, ବାଘସିଂହ, ଋଣରଙ୍ଗା, ବାହୁବଳେନ୍ଦ୍ର, ବଳୀୟାର ସିଂହ, ଉଲଟାସିଂହ, ପାଲଟାସିଂହ, ଝମ୍ପଟସିଂହ, ପାଇକରାୟ, ଭୁଜବଳ, ରଣସିଂହ, ଉତ୍ତରକବାଟ, ଦକ୍ଷିଣକବାଟ, ସେନାପତି, ବାହିନୀପତି, ଗଡ଼ନାୟକ, ଶଙ୍ଖଶଳ୍ୟ, ମହାରଥୀ ଚମ୍ପତିସିଂହ ପ୍ରଭୃତି । ତତ୍କାଳୀନ ଇତିହାସରୁ ଜଣାଯାଏ ଯେ ସେ ସମୟରେ ପ୍ରତି ଗ୍ରାମର ଗୋଟିଏ ପାଖରେ ଥିଲା ଭାଗବତ ଟୁଙ୍ଗୀ ଓ ଅନ୍ୟ ପାଖରେ ଆଖଡ଼ା । ବୟସ୍କ ବ୍ୟକ୍ତିମାନେ ଟୁଙ୍ଗୀରେ ବସି ଧର୍ମଶାସ୍ତ୍ର ବିଷୟ ଆଲୋଚନା କରୁଥିବାବେଳେ ଯୁବକ ଓ କିଶୋରମାନେ ମାଲକୁସ୍ତି, ଖଣ୍ଡାଖେଳ, ମୁଦ୍‌ଗର ବୁଲାଇବା ପ୍ରଭୃତି ଶିକ୍ଷା କରି ଶକ୍ତି ସଂଗ୍ରହ କରୁଥିଲେ । ଧର୍ମ ସହିତ ବୀରତ୍ୱର ନିବିଡ଼ ସାମଞ୍ଜସ୍ୟ ଥିଲା । ଅର୍ଥାତ୍ ଓଡ଼ିଆ ରାଜାମାନେ ଧର୍ମରକ୍ଷା ପାଇଁ କେବଳ ଯୁଦ୍ଧରେ ବ୍ୟାପୃତ ହେଉଥିଲେ ।

ଆବୁଲ ଫାଜଲଙ୍କ ଇତିହାସରୁ ଜଣାଯାଏ ଯେ, ମୋଗଲ ସମ୍ରାଟଙ୍କ ଅମଳରେ ଓଡ଼ିଶାରେ ୭୨ଟି ଗଡ଼ ବା ଦୁର୍ଗ ଥିଲା । ଏଗୁଡ଼ିକ ଦୁର୍ଗମ ଅରଣ୍ୟ ସଙ୍କୁଳ ବା ପରିଖାବେଷ୍ଟିତ ଥିଲା । ତା’ ପୂର୍ବରୁ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀ ଅର୍ଥାତ୍ ଗଙ୍ଗବଂଶର ରାଜତ୍ୱ-ବେଳକୁ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଉତ୍କଳ ସାମ୍ରାଜ୍ୟ ଜଳେଶ୍ୱର, ଭଦ୍ରକ, କଟକ, କଳିଙ୍ଗ ଓ ରାଜମହେନ୍ଦ୍ରୀ— ଏହି

ପାଞ୍ଚଟି ସୁବାରେ ବିଭକ୍ତ ହୋଇଥିଲା । ଏହି ସୁବାମାନଙ୍କ ଅଧୀନରେ ୧୨୯ଟି ଦୁର୍ଗ ଥିଲା । ସମଗ୍ର ରାଜ୍ୟଶାସନ ପାଇଁ ତିନି ଲକ୍ଷ ପଦାତିକ, ପନ୍ଦର ହଜାର ଅଶ୍ୱାରୋହୀ ଏବଂ ପାଞ୍ଚ ହଜାର ଗଜାରୋହୀ ସୈନ୍ୟ ଥିଲେ । ଏହାବ୍ୟତୀତ ସମୁଦ୍ର ଉପକୂଳର ସୁରକ୍ଷା ପାଇଁ ମସଲିପଟ୍ଟମ, କୋଣାର୍କଗଡ଼, କଳିଙ୍ଗ ପତ୍ତନ, ଚିଲିକା, ପୁରୀ, ଗୁରୁଣ୍ଡ୍ୟ, ହରିଶପୁର, ସୁବର୍ଣ୍ଣରେଖା, ହିଜଳି ଓ ତାମ୍ରଲିପ୍ତ ବନ୍ଦରମାନଙ୍କରେ ଜଳଦୁର୍ଗ ଥିଲା । ଏବେ ମଧ୍ୟ ସେହି ପୂର୍ବ ସ୍ମୃତିର ସ୍ମାରକ ସ୍ୱରୂପ କେତେକ ଗ୍ରାମର ଆଗରେ ବା ପଛରେ ଗଡ଼ ଶବ୍ଦର ପ୍ରଚଳନ ଅଛି । ଯଥା:— ଗଡ଼ପଦନପୁର, ଭଞ୍ଜଗଡ଼, ଗଡ଼ ଅମଣାକୁଦ, ଗଡ଼ମଧୁପୁର, କୁଜଙ୍ଗଗଡ଼, ହଲଦିଆଗଡ଼, ଆଠଗଡ଼, ବୋଲଗଡ଼ ଇତ୍ୟାଦି । ସେହିପରି ବୀର ରାମଚନ୍ଦ୍ରପୁର, ବୀର ନରସିଂହପୁର, ବୀର ପ୍ରତାପ-ପୁର ଓ ବୀରଭୁଙ୍ଗ ପ୍ରଭୃତି ଗ୍ରାମମାନଙ୍କ ନାମରେ ବୀର ଶବ୍ଦର ପ୍ରଚଳନ ଅଛି । କବି ଲେଖିଛନ୍ତି—

'ମହାରାଷ୍ଟ୍ରର ମାଉଲି ସେନା
ପଞ୍ଜାବର ଶିଖ
ଓଡ଼ିଶାର ଖଣ୍ଡାୟତ ଦୁର୍ଦ୍ଧର୍ଷ ନିର୍ଭୀକ ।"

ମରହଟ୍ଟା ଓ ଶିଖ ଜାତିର ଉତ୍ଥାନ ପରେ କବି ଏ ଉକ୍ତିଟି ଉଲ୍ଲେଖ କରିଛନ୍ତି । ମାତ୍ର ତା' ପୂର୍ବରୁ ବୀରତ୍ୱରେ ଗଙ୍ଗବଂଶ ଓ ସୂର୍ଯ୍ୟବଂଶ ସମସ୍ତ ଓଡ଼ିଶାର ଇତିହାସରେ ସ୍ୱର୍ଣ୍ଣଯୁଗ ନାମରେ ପରିଚିତ ।

ଅନଙ୍ଗଭୀମ ଦେବଙ୍କ ମନ୍ତ୍ରୀ ବିଷ୍ଣୁ ଶର୍ମାଙ୍କ ବୀରତ୍ୱ ସମ୍ପର୍କରେ ଗୋଟିଏ ଶିଳାଲେଖରେ ଉଲ୍ଲେଖ ଅଛି—

"ଯବନ ଯୁଦ୍ଧରେ ଅସ୍ତ୍ରଚାଳନା ଦ୍ୱାରା ଅସଂଖ୍ୟ ସୈନ୍ୟ ବିଧ୍ୱଂସକାରୀ ସେନାପତି ବିଷ୍ଣୁଙ୍କ ବିଷୟ ଆଉ କିଏ କହିବ ?

ତାହାଙ୍କ ବୀରପଣ ସନ୍ଦର୍ଶନାର୍ଥେ ସ୍ୱୟଂ ଦେବଗଣ ଅନିଦ୍ରା ଅବସ୍ଥାରେ ନିର୍ନିମେଷ ଲୋଚନରେ ଶୂନ୍ୟମାର୍ଗରେ ଅବସ୍ଥାନପୂର୍ବକ ମହା ଉତ୍ସବ କରୁଥିଲେ ।"

ବିନ୍ଧ୍ୟ ଚଳର ଅନ୍ତର୍ବର୍ତ୍ତୀ ଗ୍ରାମା ନଦୀ ତୀରସ୍ଥ ଉପବନରୁ ସମୁଦ୍ର ଉପକୂଳ ପର୍ଯ୍ୟନ୍ତ ଯବନପତିର ଯାବତୀୟ ସାମ୍ରାଜ୍ୟ ଭସ୍ମ ଚକିତ ଚିତ୍ତରେ ସର୍ବଦା ଏଭଳି ଅନୁଭବ କରୁଥିଲେ ଯେ, ସନ୍ନ୍ୟାସୀମାନେ ବହୁ ସାଧନା କରି ବି ଜଗତକୁ ଏପରି ବିଷ୍ଣୁମୟ ଦେଖି ନାହାନ୍ତି ।"

ଲାଙ୍ଗୁଳା ନରସିଂହ ଦେବଙ୍କ ଦିଗ୍‌ବିଜୟ ସଂପର୍କରେ ମାଦଳାପାଞ୍ଜିରେ ଉଲ୍ଲେଖ ଅଛି—

"ଏ ରାଜା ବାର ବର୍ଷ ଦକ୍ଷିଣ କଟକାଇ କଲେ । ସେତୁବନ୍ଧ ରମେଶ୍ୱରଠାରୁ ଗଉଡ଼ଦେଶ ଜିଣିଲେ ।"

କପିଳେନ୍ଦ୍ର ଦେବ ୧୪୫୮ ଖ୍ରୀଷ୍ଟାବ୍ଦରେ ବାହାମନିର ସୁଲତାନଙ୍କୁ ପରାସ୍ତ କରିଥିଲେ । ଉତ୍ତରରେ ଗଙ୍ଗାନଦୀ, ପୂର୍ବରେ ମହୋଦଧି ଓ ଦକ୍ଷିଣରେ କାବେରୀ ନଦୀ ପର୍ଯ୍ୟନ୍ତ ଏହାଙ୍କ ସାମ୍ରାଜ୍ୟ ବିସ୍ତୃତ ଥିଲା ।

ତାହାଙ୍କ ପୁତ୍ର ପୁରୁଷୋତ୍ତମ ଦେବ କାଞ୍ଚିଦେଶ ଜୟ କରିଥିଲେ । ସ୍ୱୟଂ ଜଗନ୍ନାଥ ଓ ବଳଭଦ୍ର ଏହାଙ୍କ କାଞ୍ଚିବିଜୟରେ ସେନାପତିତ୍ୱ କରିଥିଲେ ବୋଲି ପ୍ରବାଦ ଅଛି । ସାକ୍ଷୀଗୋପାଳ, ଗଣେଶ ମୂର୍ତ୍ତି, କରୁଣେଇ ଓ କରୁଣେଇ ଦେବତା ଏହାର ମୂକସାକ୍ଷୀ ଅଛନ୍ତି । ଜଗନ୍ନାଥ-ବଳଭଦ୍ର ମାଣିକ ଗଉଡୁଣୀଠାରୁ ଦହି ଖାଇଥିବା ଏବଂ ରାଜା ପୁରୁଷୋତ୍ତମ ଦେବ ମାଣିକ ନାମରେ ବସାଇଥିବା ମାଣିକପାଟଣା ଗ୍ରାମ ଏବେ ମଧ୍ୟ ରହିଛି ।

ଏହାଙ୍କ ଗୁଣାବଳୀ ସମ୍ପର୍କରେ ଭଟ୍ଟ ମୁଖରେ କବି ବର୍ଣ୍ଣନା କରିଛନ୍ତି—

'ଅରିମର୍ଦ୍ଦନ, ଗୁଣବର୍ଦ୍ଧନ, ସତ୍ୟ-ଧର୍ମ-ମାର୍ଗ ପାଳନ, ଆଶ୍ରିତ ଜନଗଣ ଜୀବନ, ସାଧୁସନ୍ଥ ଅଭୟ ଗୁଣ ନିଧାନ, ଦେବଦ୍ୱିଜ ପରମ ଭକ୍ତିପରିପୂର୍ଣ୍ଣ, ମହାରାଜ ଶ୍ରୀ ଶ୍ରୀ ଶ୍ରୀ ପୁରୁଷୋତ୍ତମ ଦେବ ମହାରାଜ ବିଜେ ।

ଲକ୍ଷେ ହାତୀ, ଅଶ୍ୱପତି, ଅଶେଷ ଦଳବଳ ପଦାତି, ଶତ୍ରୁ-ମନ୍ତ୍ରି, ଧନ୍ୟ ଛତ୍ରୀ, ଉଖିଲ ନାମ— କହିଲ ପୃଥ୍ୱୀ, ସାରଧିସାରବର ପ୍ରତାପ, ବୈରିତାପ, ମାଳଦ୍ଦନର ନାଥ— ନାଥ ! ଅମଳ-କମଳ ନନ୍ଦିତ-ପଦଦ୍ୱନ୍ଦ୍ୱ, ଜୟ ପୁରୁଷୋତ୍ତମ ଦେବ ଜୟ ! ମହିମା, ରାଜଛତ୍ର ଗରିମା— ଗଙ୍ଗାତଟ୍ ଗୋଦାବରୀ ସୀମା, ଧୀନଦୁଃଖି ଦୁଃଖ-ତାପ ଶୂନ୍ୟମା, ଗନ୍ଧାଧରପୂର୍ଣ୍ଣ ଅଷ୍ଟ ଅଣିମା, ମହାରାଜ ଶ୍ରୀ ଶ୍ରୀ ପୁରୁଷୋତ୍ତମଦେବ ବିଜେ ।"

ମହାକବି କାଳିଦାସ 'ରଘୁବଂଶ'ରେ କଳିଙ୍ଗରାଜାଙ୍କ ବୀରତ୍ୱ ବର୍ଣ୍ଣନା କରି ମଧ୍ୟ ଲେଖିଛନ୍ତି—

ଯସ୍ୟସ୍ତରତ୍ ସୈନ୍ୟଗଜଚ୍ଛଲେନ······

ବନ୍ଦୀକୃତାନାମିବ ପଦ୍ଧତିର୍ଦ୍ଵେ ।'

କଳିଙ୍ଗ ରାଜାଙ୍କ ଅଜସ୍ର ଗଜଙ୍କ ଅପ୍ରତିହତ ଗତି ଦେଖିଲେ ସ୍ୱୟଂ ମହେନ୍ଦ୍ର ପର୍ବତ ଆଗେ ଆଗେ ଯାଉଛି ବୋଲି ମନେହୁଏ । କନିଷ୍ଠ ବାହୁ ଧନୁର୍ଦ୍ଧରମାନଙ୍କର ଅଗ୍ରଗଣ୍ୟ କଳିଙ୍ଗ ରାଜାଙ୍କ ଧନୁଗୁଣର ସତତ ସଞ୍ଚାଳନ ଫଳରେ ବାହୁରେ ଦୁଇଟି କଳା ଚିହ୍ନ ବସିଯାଇଛି । ମନେହୁଏ—ଶତ୍ରୁ ସ୍ତ୍ରୀମାନଙ୍କ କଜ୍ଜ୍ୱଳଯୁକ୍ତ ଦୁଇ ଆଖିର ଅଶ୍ରୁଧାର ଏହିବାଟେ ବହିଯାଇ ଏ ଚିହ୍ନ ରଖିଅଛି ।

ଓଡ଼ିଆ ରଜାମାନଙ୍କ ଦିଗ୍‌ବିଜୟ ଚିହ୍ନ ମଧ୍ୟ ଓଡ଼ିଶାର ମନ୍ଦିର-ଗାତ୍ରମାନଙ୍କରେ ଦେଖାଯାଏ । ହସ୍ତିଲତା, ଗଜାରୋହୀ, ଅଶ୍ୱାରୋହୀ, ବର୍ମଶିରସ୍ତ୍ରାଣମଣ୍ଡିତ, ଅସ୍ତ୍ରଶସ୍ତ୍ର ସଜ୍ଜିତ ସୈନିକ, ସୈନିକମାନଙ୍କ ପନ୍ତିଆର ଏବେ ମଧ୍ୟ ଓଡ଼ିଆର ରକ୍ତରେ ପୁଲକ ଜଗାଏ । ଏବର ନାଗାନୃତ୍ୟ ଓ ଛଉନୃତ୍ୟ ଆମ ଯୋଦ୍ଧବେଶର ପରିଚୟ ପ୍ରଦାନ କରେ । ଯାହା, ତାମସାରେ ଧନୁଶର, ଗଦା ଓ ଖଡ୍‌ଗ ପ୍ରଭୃତିର ବ୍ୟବହାର ଦେଖାଯାଏ । ପୃଷ୍ଠଦେଶରେ ଢାଲ, ହସ୍ତରେ ବଦ୍ଧ ଶର ସଂଯୁକ୍ତ ଧନୁ, କଟୀଦେଶରେ ତରବାରି ଓ କାନ୍ଧରେ ପରଶୁ ପ୍ରଭୃତି ଧରାଇ ଯେତେବେଳେ ନୃତ୍ୟକାରୀ ମଞ୍ଚ ଉପରକୁ ଆସନ୍ତି, ସେତେବେଳେ ଅପୂର୍ବ ବୀରରସରେ ଉନ୍ମାଦିତ ହୋଇ ଦର୍ଶକ କେତେକ୍ଷଣ ପାଇଁ ନିଜର ଦୈନ୍ୟ ଭୁଲିଯାଏ ।

ସେହିପରି ରଜାମାନଙ୍କ ପ୍ରଧାନଦ୍ୱାର ଓ ମନ୍ଦିରମାନଙ୍କ ଆଗରେ ଗଜସିଂହ ମୂର୍ତ୍ତି ଆମ ବୀରତ୍ୱର ଆଉ ଏକ ଦୃଷ୍ଟାନ୍ତ । ସିଂହଦ୍ୱାରର ଅର୍ଥ ସିଂହ ଯେଉଁ ଦ୍ୱାରରେ ପ୍ରବେଶ କରେ । ପୁଣି ଗଜସିଂହର ଉଦ୍ଦେଶ୍ୟ—ସିଂହ ଯେପରି ଅମିତ ବଳଶାଳୀ ଓ ଗଜମାନଙ୍କର ପତି, ଉତ୍କଳ ରଜାମାନେ ସେହିପରି ବିକ୍ରମଶାଳୀ ଓ ଗଜପତି । ମନ୍ଦିରର ସିଂହଦ୍ୱାରମାନଙ୍କରେ ଥିବା ଗଜସିଂହର ଅବଶ୍ୟ ସ୍ୱତନ୍ତ୍ର ଆଧ୍ୟାତ୍ମିକ ଅର୍ଥ ଅଛି । ତାହା ହେଉଛି—ପ୍ରମତ୍ତ ବାରଣ ପରି ଶକ୍ତିଶାଳୀ ରିପୁମାନଙ୍କୁ ସିଂହବିକ୍ରମରେ ଦମନ କଲେ ଦେବଦର୍ଶନ ସାର୍ଥକ ହୁଏ ।

ଉତ୍କଳୀୟ ରଜାମାନେ ଯୁଦ୍ଧ ଅଭିଯାନରେ ବାହାରିଲେ ସେମାନଙ୍କ ସହିତ ଛତ୍ର ଚାମରଧାରୀ, ହସ୍ତୀଯୂଥ, ଅଶ୍ୱ, ପାଲିଙ୍କି, ଶଗଡ଼, ଦାସୀ, ନୃତ୍ୟକାରୀ, ଭାଟ, ଭଣ୍ଡାରୀ, ଧୋବା, କେଉଟ,

କୋଦାଳିଆ, କୁରଡ଼ିଆ ଓ ତମ୍ବୁ ପ୍ରଭୃତି ଯାଉଥିଲା । ବାଦ୍ୟ ମଧ୍ୟରେ ନାଗରା, ଧୁମ୍ପୁସା, ତୁରୀ, ରଣଶିଙ୍ଗା, ଘଣ୍ଟା, ଘୁଙ୍ଗୁର, ଡବଡ଼ବ ବାଇଦ, ଚେଲେଙ୍ଗା ବାଇଦ, ମୁଖବଂଶୀ, ନାକବଂଶୀ, କାହାଳୀ, ପଟହ, ଭେରୀ, ଜଗଝମ୍ପା ପ୍ରଭୃତି ଯାଉଥିଲା । ସୈନ୍ୟମାନଙ୍କ ବ୍ୟକ୍ତିତ ଆଠଖମ୍ଭରେ ଆଠଦଣ୍ଡପା, ମଝି ଖମ୍ଭରେ ରଜା, ବଶେଇ ମନ୍ତ୍ରୀ, ରାଉତ, କୁଅଁର ଓ ରାଜ ଅମାତ୍ୟ ପ୍ରଭୃତି ମଧ୍ୟ ଯାଉଥିଲେ । ଏତଦ୍‌ଭିନ୍ନ ସର୍ବପ୍ରଥମେ ସେମାନେ ଶୁଭସୂଚକ ସ୍ୱରରେ ଭଦଭଦଳିଆ ପକ୍ଷୀ ଉଡ଼ାଇ ତା'ପରେ ଯାତ୍ରା କରୁଥିଲେ ।

## ସମର ଓ ସାହିତ୍ୟ—

ପୁରାଣରୁ ଜଣାଯାଏ ଯେ, ସୃଷ୍ଟିର ପ୍ରାରମ୍ଭରେ ପ୍ରଥମେ ମଲ୍ଲଯୁଦ୍ଧ ପ୍ରଥା ପ୍ରଚଳିତ ଥିଲା । ବିଷ୍ଣୁ ମଧୁକୈଟଭଙ୍କୁ ମଲ୍ଲଯୁଦ୍ଧରେ ବଧ କରି ମେଦିନୀ ନିର୍ମାଣ କରିଥିଲେ । ନୃସିଂହ ଅବତାରରେ ମଧ୍ୟ ହିରଣ୍ୟକଶ୍ୟପଙ୍କୁ ନଖରେ ବିଦାରଣ କରିଥିଲେ । ମାତ୍ର ଦେବାସୁର ଯୁଦ୍ଧ ସମୟରେ ଯୁଦ୍ଧକ୍ଷେତ୍ରରେ ଅସ୍ତ୍ରଶସ୍ତ୍ରର ପ୍ରଚଳନ ଜଣାଯାଏ । ଦୁର୍ଗା ଯେତେବେଳେ ମହିଷାସୁରଙ୍କୁ ବଧ କରିବାକୁ ଗଲେ, ସେତେବେଳେ ଦେବଗଣ ତାହାଙ୍କୁ ନିଜ ନିଜର ଅସ୍ତ୍ରଶସ୍ତ୍ର ପ୍ରଦାନ କରିଥିଲେ । ଦେବୀ ନିଜେ ଅକ୍ଷୟ ତୂଣୀର ସୃଷ୍ଟି କରିଥିଲେ । ଇନ୍ଦ୍ର ତାହାଙ୍କ ବଜ୍ର, ବିଷ୍ଣୁ ବୈଷ୍ଣବାସ୍ତ୍ର ଓ କୌମୁଦକ ଗଦା, ବ୍ରହ୍ମା ବ୍ରହ୍ମାସ୍ତ୍ର, ଶିବ ପାଶୁପତ ଅସ୍ତ୍ର, ପରଶୁ କୁଠାର, ଯମ କାଳପାଶ, ପବନ ବାୟବାସ୍ତ୍ର ପ୍ରଭୃତି ତାହାଙ୍କୁ ପ୍ରଦାନ କରିଥିଲେ । ଏ ଅସ୍ତ୍ରଗୁଡ଼ିକ ମନ୍ତ୍ରଶକ୍ତି ସାହାଯ୍ୟରେ ଚଳପ୍ରଚଳ କରୁଥିଲା । ରାମାୟଣରେ ଉଲ୍ଲେଖ ଅଛି ଯେ, ରାମ-ଲକ୍ଷ୍ମଣ ତାଡ଼କାସୁରଙ୍କୁ

ବିନାଶ କରିବାକୁ ଯାଉଥିବାବେଳେ ବିଶ୍ୱାମିତ୍ର ତାହାଙ୍କୁ ବଳା ଓ ଅତିବଳା ବିଦ୍ୟା ପ୍ରଦାନ କରିଥିଲେ । ବିଦ୍ୟାବଳରେ ରାମଚନ୍ଦ୍ର ସମସ୍ତ ଅସ୍ତ୍ରଶସ୍ତ୍ରର ପ୍ରୟୋଗ ଜାଣି ପାରୁଥିଲେ ଏବଂ ସେଗୁଡ଼ିକ ତାହାଙ୍କ ଇଚ୍ଛା ଅନୁସାରେ ଚଳ ପ୍ରଚଳ କରିପାରୁଥିଲେ । ରାମାୟଣ କାହିଁକି, ଦ୍ୱାପରଯୁଗରେ ମଧ୍ୟ ଏହି ମନ୍ତ୍ରଶକ୍ତି ସାହାଯ୍ୟରେ ବାଣ ଗୁଡ଼ିକ ପରିଚାଳିତ ହେଉଥିବାର ମହାଭାରତରୁ ଜଣାଯାଏ । ଏବେ ମଧ୍ୟ ଏ ବିଦ୍ୟା ବିରଳ ନୁହେଁ । କେତେକ ଜାତିର ଲୋକେ ତାଲ ସୁପାରି ବୋଲି ଏକପ୍ରକାର ଖେଳ ଦେଖାଇ ପଇସା ରୋଜଗାର କରନ୍ତି । ଏଥିରେ କୁମ୍ଭିରିଆ ବାଣ, କଲୁରିଆ ବାଣ, ବାଘୁଆ ବାଣ ପ୍ରଭୃତି ପ୍ରୟୋଗ କରାଯାଏ ।

ପ୍ରାଚୀନ ତାଳପତ୍ର ପୋଥି ମଧ୍ୟରୁ ଯେଉଁସବୁ ତାନ୍ତ୍ରିକ ପ୍ରକ୍ରିୟା ଉଦ୍ଧାର କରାଯାଇଛି, ତା' ମଧ୍ୟରେ ଅଗ୍ନିବାଣ, ସମ୍ମୋହନବାଣ, କତରାଲଗା ବାଣ, ରକ୍ତବାଣ, କାଇଁଶିକା ବାଣ ପ୍ରଭୃତିର ଉଲ୍ଲେଖ ଅଛି । ଏ ବାଣଗୁଡ଼ିକ ସାହାଯ୍ୟରେ ଶତ୍ରୁକୁ ଜବଦ କରିବା, ଯନ୍ତ୍ରଣାରେ ପକାଇ ରଖିବା, ଏପରିକି ଜୀବନରେ ମାରିଦେବାର ମଧ୍ୟ ଉଦାହରଣ ବିରଳ ନୁହେଁ । ଏଠାରେ ସେହିପରି ଏକ ବାଣ ପେଷଣର ନମୁନା ଦିଆଗଲା—

'ଓଁ ବାଣରେ ବାଣ ବ୍ରହ୍ମଣର ବାଣ, ମାରନ୍ତେ ତେତିଶ କୋଟି ଦେବତା କମ୍ପଇ, ମର୍ତ୍ତ୍ୟେ ନରଲୋକ କମ୍ପଇ, ପାତାଳେ ବାସୁକୀ କମ୍ପଇ । ମୋହର ବାବୁ ବ୍ରହ୍ମଣର ଚଳିଯିବୁ ଅମୁକାଇ ପାଟିବାଟେ ପଶି ମଳଦ୍ୱାର ବାଟେ ବାହାରିଯିବୁ । ଅମୁକାଇ ରକ୍ତ ଉଦ୍‌ଗାରି ମରିବ । ମରୁ ମରୁ ବୋଲି କାହାର ଆଜ୍ଞା, ରାବଣେଶ୍ୱରର ପୁତ୍ର ଇନ୍ଦ୍ରଜିତର କୋଟି କୋଟି ଆଜ୍ଞା ।

ବୀଜମନ୍ତ୍ର - ଓଁ ଅମୁକାଇକ ଭୂତଂ ସ୍ୱାହା ।

(ଅମୁକାଇକ ସ୍ଥାନରେ ଯେଉଁ ଲୋକକୁ ବାଣ ପ୍ରୟୋଗ କରାଯିବ, ତାର ନାମ ନିଆଯିବ । ମନ୍ତ୍ରଭେଦ ହୋଇଯିବା ଭୟରେ ବାଣ ପ୍ରୟୋଗର କୌଶଳ ଏଠାରେ ଦିଆଗଲା ନାହିଁ ।)

ଏହାବ୍ୟତୀତ କେତେକ ଜାତିର ସର୍ପ ଅଛନ୍ତି, ଯେଉଁମାନେ ମନୁଷ୍ୟ ବା ପଶୁକୁ କାମୁଡ଼ିଦେଇ ଗଛକୋରଡ଼ରେ ବା ଗାତ-ଭିତରେ ପଶି ରହନ୍ତି । ଏମାନେ ହଲଚଲ ନ ହେଲେ ବିଷ ଝାଡ଼େ ନାହିଁ । ଏଭଳି ଅବସ୍ଥାରେ ତାନ୍ତ୍ରିକ ଗୋଟିଏ କଦଳୀଗଛ ପୋତି ତାହାକୁ ମନ୍ତ୍ର ସାହାଯ୍ୟରେ ଅଗ୍ନିବାଣ ନିକ୍ଷେପ କରେ । ଏପରି ହେଲେ ଗଛ କୋରଡ଼ରୁ ବା ଗାତ ଭିତରୁ ସାପ ବାହାରେ ଏବଂ ତାନ୍ତ୍ରିକ ବା ସର୍ପବୈଦ୍ୟମାନେ ବିଷ ଝାଡ଼ିବାକୁ ସକ୍ଷମ ହୁଅନ୍ତି । ଗ୍ରାମାଞ୍ଚଳରେ ତଥା ଆଦିବାସୀ ସମାଜରେ ଏହିପରି ମନ୍ତ୍ରଶକ୍ତି ସାହାଯ୍ୟରେ ବହୁପ୍ରକାର ବାଣ ପେଷଣର ଉଦାହରଣ ଅଛି ।

ସେ ଯାହାହେଉ, ଆଦିକବି ସାରଳା ଦାସଙ୍କ ପୂର୍ବରୁ ସମର ସମ୍ପର୍କୀୟ କୌଣସି ସାହିତ୍ୟ ଓଡ଼ିଆ ଭାଷାରେ ଲେଖାଯାଇଥିବାର ପ୍ରମାଣ ନାହିଁ । ସାରଳା ଦାସଙ୍କଠାରୁ ଆରମ୍ଭ କରି ସମର ସାହିତ୍ୟ ବିଷୟ ଆଲୋଚନା କରିବାକୁ ଗଲେ ଓଡ଼ିଆ ସାହିତ୍ୟକୁ କେତୋଟି ବିଭାଗରେ ବିଭକ୍ତ କରିବାକୁ ପଡ଼େ । ଯଥା:—ସାରଳା ଦାସ ଓ ବଳରାମ ଦାସଙ୍କ ସମୟର ପ୍ରାଚୀନ ଯୁଗ । ଉପେନ୍ଦ୍ର ଭଞ୍ଜ, ଶିଶୁ-ଶଙ୍କର, ପୁରୁଷୋତ୍ତମ ଦାସ ଓ ବ୍ରଜନାଥ ପ୍ରଭୃତିଙ୍କୁ ନେଇ ରୀତିଯୁଗ, ରାଧାନାଥ ଓ ଫକୀରମୋହନ ପ୍ରଭୃତିଙ୍କୁ ନେଇ ଆଧୁନିକ ଯୁଗର ପର୍ଯ୍ୟାୟଭୁକ୍ତ କରାଯାଇପାରେ । କବି ଓ ସାହିତ୍ୟିକମାନଙ୍କର କାଳ ଅନୁଯାୟୀ ସେଗୁଡ଼ିକ କ୍ରମ ଅନୁସାରେ ଉଲ୍ଲେଖ କରାଗଲା ।

# ପ୍ରାଚୀନ ଯୁଗ

## ସାରଳା ଦାସ :—

ସାରଳା ଦାସ ଉତ୍କଳରେ ଆଦିକବି ଓ ଶବ୍ଦମୁନି ରୂପେ ପରିଚିତ । ସେ କପିଳେନ୍ଦ୍ର ଦେବଙ୍କ ସମସାମୟିକ ଥିଲେ । କପିଳେନ୍ଦ୍ର ଦେବ ଉତ୍କଳରେ ସୂର୍ଯ୍ୟବଂଶର ପ୍ରତିଷ୍ଠାତା । ତାହାଙ୍କ ପୂର୍ବବର୍ତ୍ତୀ ଗଙ୍ଗବଂଶର ରାଜାମାନେ ଦୁର୍ବଳ ଥିବାରୁ ସକଳ ଉତ୍କଳ ସାମ୍ରାଜ୍ୟରେ ବିଦ୍ରୋହ ସୃଷ୍ଟି ହୋଇଥିଲା । ୧୪୩୫ ଖ୍ରୀଷ୍ଟାବ୍ଦରେ କପିଳେନ୍ଦ୍ର ଦେବ ସିଂହାସନ ଆରୋହଣ କଲାପରେ ବିଦ୍ରୋହ ଦମନ ତାହାଙ୍କ ଶାସନର ପ୍ରଥମ କାର୍ଯ୍ୟ ହୋଇପଡ଼ିଲା । ବିଦ୍ରୋହ ଦମନ ପରେ ପରେ ସେ ଦାକ୍ଷିଣାତ୍ୟ ଅଭିଯାନରେ ଯାଇ କୋଣ୍ଡାପିଲ୍ଲି ପର୍ଯ୍ୟନ୍ତ ଅଗ୍ରସର ହୋଇଥିଲେ । ଏତିକବେଳେ କନକା ଓ କୁଜଙ୍ଗ ପ୍ରଭୃତିର ରାଜାମାନେ ବିଦ୍ରୋହ କରିଥିଲେ ଓ ବଙ୍ଗର ସୁଲତାନ ନାସିରୁଦ୍ଦୀନ ମହମ୍ମଦ ଉତ୍କଳର ଉତ୍ତରାଞ୍ଚଳ ଆକ୍ରମଣ କରିଥିଲେ । କପିଳେନ୍ଦ୍ର ଦେବ ଦାକ୍ଷିଣାତ୍ୟରୁ ଫେରି ବିଦ୍ରୋହ ଦମନ କରିବା ସଙ୍ଗେ ସଙ୍ଗେ ମୁସଲମାନମାନଙ୍କୁ ଗଙ୍ଗାନଦୀର ଉତ୍ତର ଦିଗକୁ ତଡ଼ିଦେଇଥିଲେ । ତା'ପରେ ପୁଣି ଦାକ୍ଷିଣାତ୍ୟ ବିଜୟରେ ବିଦାର୍ ବିଜୟନଗର ପର୍ଯ୍ୟନ୍ତ ରାଜ୍ୟଜୟ କରିଥିଲେ । ୧୪୬୫ ଖ୍ରୀଷ୍ଟାବ୍ଦରେ କୃଷ୍ଣାନଦୀ କୂଳରେ ତାହାଙ୍କର ମହାପ୍ରୟାଣ ଘଟିଲା । କପିଳେନ୍ଦ୍ର ଦେବଙ୍କ ରାଜତ୍ୱର ଦୀର୍ଘ ୩୦ ବର୍ଷ କାଳ ଯୁଦ୍ଧ ଓ ରାଜ୍ୟ-ଜୟରେ ବିତିଥିଲେ ମଧ୍ୟ ପରାଜୟର ଗ୍ଲାନି ତାହାଙ୍କୁ ଆଦୌ ସ୍ପର୍ଶ କରି ନ ଥିଲା । ମହାକବି ସାରଳା ଦାସ ତାହାଙ୍କ ରାଜ୍ୟଜୟ, ଯୁଦ୍ଧ ଅଭିଯାନ ଓ ଐତିହାସିକ ବିଜୟରେ ଅନୁପ୍ରାଣିତ ହୋଇ

ଯୁଦ୍ଧର ବାସ୍ତବ ଚିତ୍ର ପ୍ରଦାନରେ ସକ୍ଷମ ହୋଇପାରିଛନ୍ତି । ତେଣୁ ସେ ଚଣ୍ଡୀପୁରାଣରେ ଯୁଦ୍ଧଯାତ୍ରା ସମ୍ପର୍କରେ ଉଲ୍ଲେଖ କରିଛନ୍ତି —

"ମୈଷାସୁର ଭୁଲେ ରଥ ଏଗାର ସାଗର
ନବ କୋଟି ପଞ୍ଚଶତ ଅର୍ବୁଦ ଯେ ବୀର
ଅଶୀ କୋଟିଏ ମୁକୁଟ ବନ୍ଧା ଯୋଦ୍ଧା ଭୁଲେ
ପଦାତିଗଣ ତାହାର କେହୁ ପରକଳେ ।
ଛାଞ୍ଚ ଅପୂର୍ବ ଚ୍ଚମର ପଡ଼େ କେନ ପାଶେ
ଚ୍ଚମର ମାନଙ୍କେ ମୁକ୍ତା ଲମ୍ବେ ଲକ୍ଷେ ଲକ୍ଷେ
ପଞ୍ଚଷଷ୍ଠୀ ସସ୍ର ବୀର ଢୋଲ ଯେ ବଜାଇ
ପଞ୍ଚଷଷ୍ଠୀ ସହସ୍ର ଯେ ନିଶାଣ ଶୁଭଇ ।
ପଞ୍ଚଷଷ୍ଠୀ ସହସ୍ରେକ ନିଶାଣ ଯେ ବାଜେ
ବଜର୍ଣ୍ଣି ବଜଘୋଷିତ ତର୍ଣ୍ଣି କେହୁ ହଜେ ।
ପଞ୍ଚଷଷ୍ଠୀ ସସ୍ର କାଳୁ ଅଛଇ ଝଞ୍ଜାଳ
ପଞ୍ଚଷଷ୍ଠୀ କୋଟି ତର୍ଣ୍ଣି ବାଜଇ କାହାଳ ।
ପଞ୍ଚଷଷ୍ଠୀ କୋଟି ଘଣ୍ଟ ବାଜେ ତର୍ଣ୍ଣି ପୁଣି
ପଞ୍ଚଷଷ୍ଠୀ କୋଟି ଗ୍ରମତାଳ ପରମାଣି
ପଞ୍ଚଷଷ୍ଠୀ କୋଟି ଏକ ମହୁରି ଦୋସରି
ଏ ବଧି ଅନେକ ପରକାରେ ବାଦ୍ୟ ସ୍ଫୁରି ।"

ସାରଳା ଦାସ କେବଳ ସୈନ୍ୟସଜ୍ଜା ବା ସୈନ୍ୟଚାଳନା ଲେଖି ନରବ ରହି ନାହାନ୍ତି । ଉଦ୍ୟାସ୍ତ୍ରର ପ୍ରୟୋଗ, ବାଣର ପ୍ରତିବାଣ ଓ ଧନୁର୍ବେଦ ସଂପର୍କରେ ମଧ୍ୟ ସେ ଅବହିତ ଥିବାର ଜଣାଯାଏ । ପ୍ରାଚୀନ କାଳରେ ଧନୁର୍ବେଦ ଏକ ମହତ୍ତ୍ୱ ସ୍ଥାନ ଅଧିକାର କରିଥାଇଥିଲା । ଧନୁର୍ବେଦ ଶିକ୍ଷା ନ କଲେ କେହୁ

ଦିବ୍ୟାସ୍ତ୍ର ପରିଚାଳନା କରିପାରୁ ନ ଥିଲେ । ସାରଳା ଦାସ ଚଣ୍ଡୀ-ପୁରାଣରେ ମହିଷାସୁର ସହ ଚଣ୍ଡୀଙ୍କ ଯୁଦ୍ଧର ବର୍ଣ୍ଣନା କରି ଲେଖିଛନ୍ତି—

"କୋପଭରେ ଗୋସାମଣୀ ଦିବ୍ୟଅସ୍ତ୍ର କଲେ
ନାଗପାଶ ବାଣ ମନ୍ତ୍ର ପଢ଼ିଣ ପେଷିଲେ ।
ଅଇଲେ ଯେ ନାଗେ ମହା ବିଶ୍ୱରୂପ ଧରି
ଫୁଫୁକାର ଗର୍ଜନରେ ବିଷବୃଷ୍ଟି କରି ।
ଜଗତ ଉଜ୍ଜ୍ୱଳ ହେଲା ଦେଖି ମୈଷାସୁର
ଶିଙ୍ଗ ମାରି ନାଶ କଲା ସେ ଅକ୍ଷୟ ଶର ।
ପୁଣି ସୁଦର୍ଶନ ଚକ୍ର ଧରି ମହାମାୟୀ
ମୈଷାସୁର ଶିରଚ୍ଛେଦ ବୋଲିଣ ପେଷଇ ।
କୋଟିଏ ସୂର୍ଯ୍ୟର ତେଜ ଯେଉଁ ମହାଚକ୍ର
ମୈଷାସୁର କନ୍ଧେ ପଡ଼ି ହୋଇଲା ସେ ବକ୍ର
ପୁଣି ଦେବୀ ନାଗପୂଣ ଶର କରେ ଧରି
ଧନୁର୍ବେଦ ପଢ଼ି ଗୁଣେ ବସାଇ ଟଙ୍କାରି ।
ଉଚ୍ଚୁଡ଼କେ ମନ୍ତ୍ର ପଢ଼ି ତେଜେ ବଡ଼ ଶର
ସପ୍ତସିନ୍ଧୁ ଦିଶେ ଜଳ ବିନ୍ଦୁ ପରକାର ।
ଶୂନ୍ୟେ ଦିହନ୍ତା ପୁରୁଷେ ରକ୍ଷି ନ ପାରିଲେ
ଆଜ କି ପ୍ରଳୟ ହେବ ଏହା ବିଚାରିଲେ ।"

ସାରଳା ଦାସ ତାଙ୍କ ମହାଭାରତରେ ଯେଉଁ ଚକ୍ରବ୍ୟୂହ, ଶକଟବ୍ୟୂହ ଓ ପଦ୍ମବ୍ୟୂହ ପ୍ରଭୃତିର ବର୍ଣ୍ଣନା କରିଛନ୍ତି, ତହିଁରୁ ମନେହୁଏ ଯେ ଯୁଦ୍ଧ ସମ୍ପର୍କରେ ସେ ସମ୍ପୂର୍ଣ୍ଣ ଅନଭିଜ୍ଞ ନୁହନ୍ତି । ବ୍ୟୂହର କିଏ କେନ୍ଦ୍ରସ୍ଥଳ, କିଏ ପ୍ରଧାନ ସ୍ଥାନ ଓ କିଏ ଦୁର୍ବଳ

ସ୍ଥାନ, ତାହା ସେ ନିର୍ଣ୍ଣୟ କରି ଶାରଣ୍ଟ ଅନୁସାରେ ସେ ସେହି ସ୍ଥାନମାନଙ୍କରେ ରଥୀମାନଙ୍କୁ ରଖାଇଛନ୍ତି । ପୁଣି ବ୍ୟୂହ କପରି ଭେଦ କରଯାଇପାରିବ, ତାହା ମଧ୍ୟ ଦର୍ଶାଇଛନ୍ତି ।

ବ୍ୟୂହ ରଚନା ସେତେବେଳେ କାର୍ଯ୍ୟିକ, ବର୍ତ୍ତମାନର ଆଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ପଦାତିକ ବାହିନୀର ଯୁଦ୍ଧ ସମୟରେ ମଧ୍ୟ ଏକ ପ୍ରଧାନ ଉପାଦାନ । କୌଶଳ ସହକାରେ ବ୍ୟୂହ ରଚନା ନ କଲେ ଶତ୍ରୁ ସୈନ୍ୟଙ୍କୁ ସହଜରେ ପରାସ୍ତ କରିବା ସମ୍ଭବ ନୁହେଁ । ଏହିପରି ଏକ ଚକ୍ରବ୍ୟୂହ ମଧ୍ୟରୁ ଅଭିମନ୍ୟୁ ବାହାରି ନ ପାରି ନିହତ ହୋଇଥିଲେ ଓ ଶକଟବ୍ୟୂହ ଭେଦ କରି ନ ପାରି ଅର୍ଜୁନ ଯୁଦ୍ଧରେ ପରାଙ୍‌ମୁଖ ହୋଇଥିଲେ ।

ସାରଳା ଦାସ ଅଧିକ ଗୁରୁତ୍ୱ ଆରୋପ କରିଛନ୍ତି ମଲ୍ଲଯୁଦ୍ଧ ଉପରେ । ବକାସୁର ବଧଠାରୁ କୀଚକ ବଧ, ଭୀମ-ଦୁଃଶାସନ ଯୁଦ୍ଧ ଓ ଦୁର୍ଯ୍ୟୋଧନଙ୍କ ଉରୁଭଙ୍ଗ ଘଟଣା ସେ ଯେପରି ବର୍ଣ୍ଣନା କରିଛନ୍ତି, ତାହା ତତ୍କାଳୀନ ଓଡ଼ିଶାରେ ଥିବା ଗ୍ରାମ ଆଖଡ଼ାଘରର ପ୍ରଭାବ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ବର୍ତ୍ତମାନ ଏ ସବୁ ଆଖଡ଼ା ପୃଷ୍ଠପୋଷକତା ଅଭାବରୁ ଲୋପ ପାଉଥିଲେ ମଧ୍ୟ କେତେକ ସ୍ଥାନରେ ଏ ପର୍ଯ୍ୟନ୍ତ ବିଲୁପ୍ତ ହୋଇ ନାହିଁ । ସେଥିରେ ମଲ୍ଲଯୁଦ୍ଧ, କୁସ୍ତି, ଖଣ୍ଡାଚାଳନା ଓ ବାଡ଼ିଖେଳ ଶିକ୍ଷା ଦିଆଯାଉଛି । ଏ ସମସ୍ତ ଆଖଡ଼ାର ଦେବତା ମହାବୀର ବା ହନୁମାନ । ବାଗଷ୍ଟମୀ ଆଖଡ଼ା-ଗୁଡ଼ିକ ଦଶହରାର ଅଷ୍ଟମୀ ଦିନ ବାଡ଼ି ଓ ତରବାରି ଖେଳ ଦେଖାଇବାର ବିଧି ଅଛି । ଦଶହରାର ନିଖବନ୍ଧା ଉତ୍ସବ ବ୍ୟତୀତ ବର୍ତ୍ତମାନ ଓଡ଼ିଶାର ଖଣ୍ଡାୟତମାନେ ଘରେ ଘରେ ଖଣ୍ଡା ରଖି

ଦଶହରା ଦିନ ତହିଁରେ ସିନ୍ଦୂର ଲେପି ପୂଜା କରିବାର ପରମ୍ପରା ମଧ୍ୟ ରହିଛି ।

ମହାଭାରତରେ ବର୍ଣ୍ଣିତ କର୍ଣ୍ଣ ଓ ଦ୍ରୋଣ ଦୁହେଁଯାକ ପରଶୁରାମଙ୍କର ଶିଷ୍ୟ ଓ ଯୁଦ୍ଧବିଦ୍ୟାରେ ସୁନିପୁଣ । ଅର୍ଜ୍ଜୁନ ଧନୁର୍ବିଦ୍ୟାରେ ପାରଙ୍ଗମ ଓ ତପୋବଳରେ ଦିବ୍ୟ ଅସ୍ତ୍ରର ଅଧିକାରୀ । ଭୀମ ମଲ୍ଲଯୁଦ୍ଧରେ ଅଦ୍ୱିତୀୟ । ତାହାଙ୍କ ଶରୀର ବଜ୍ରତୁଲ୍ୟ । ତିଳକୁ ହସ୍ତରେ ମର୍ଦ୍ଦନ କରି ସେ ତେଲ ବାହାର କରିପାରନ୍ତି, ଅକଟା ଅକଟା ଗିଳନ୍ତି, ଷାଠିଏ ପଉଟି ଅନ୍ନ ଭୋଜନ କରନ୍ତି । ଗଦାଯୁଦ୍ଧରେ ତାହାଙ୍କ ସମକକ୍ଷ କେହି ନ ଥିଲେ । ଅସ୍ତ୍ର ଅଭାବରେ ବୃକ୍ଷକୁ ଉପାଡ଼ି ମଧ୍ୟ ସେ ଯୁଦ୍ଧକୁ ଯାଆନ୍ତି । ଦ୍ରୌପଦୀଙ୍କ ସ୍ୱୟମ୍ବର-ବେଳେ ସାରଳା ଦାସ ଭୀମଙ୍କର ଏକ ଯୁଦ୍ଧର ବର୍ଣ୍ଣନା ଦେଇ ଲେଖିଛନ୍ତି—

"ଆଗେଣ ଦେଖିଲା ଯେ ତେନ୍ତୁଳି ବେଣି ବୃକ୍ଷ
ଧାଡିକାରେ ଉପାଡ଼ିଲା ତାହା ପବନର ବଛ ।
ବଳରାମେ ବୋଇଲେ ଭ୍ରୁ ଦେଖ ଦେଖ ଜଗନ୍ନାଥ
ଅର୍ଜ୍ଜୁନ ତରଟ ହୋଇଲା କେମନ୍ତ ।
ଗୋବିନ୍ଦ ବୋଇଲେ ସ୍ୱାମୀ ଦେଖ ହୋ ବଳରାମ
ବେଣି ବୃକ୍ଷ ବୁଲାଇ ରଣେ ବଜେ କଲା ଭୀମ ।
ଜଭ୍ର ହୋଇଣ ଗୁହିଁଲେ ଦେବ ହଳପତି
ଦେଖିଲେ ଭୀମସେନର ବ୍ରିକୋଦର ମୂରତି ।
ନୃସିଂହ ମୂରତି ଯେହ୍ନେ ହିରଣ୍ୟ ବିଦାରଣ କାଳେ
ତମ୍ଭାଚଟ ଜାଣି ଭୀମର ଭ୍ରମଇ ବେଣି ତୋଳେ ।

ଘୋଡ଼ାଙ୍କର ପର୍ବତ ଯେହ୍ନେ ଆସଇ ଉପୁଡ଼
ଆଗେଣ ପଡ଼ନ୍ତ କ ଆସି କୃତାନ୍ତକ ଧାଡ଼ ।
ଆରେ ଆରେ ବୋଲି ଖ୍ରୀମ ଉଡ଼ସ୍ୱେ ଗୁଡ଼ଲ
ମଧ୍ୟଭୁବନ କ ହାତେ ଲେଉଟି ପଡ଼ନ୍ତ ।
ପାଞ୍ଚ ଲକ୍ଷ ଯୋଜନ ଯେ ସଂଯମନୀପୁର
ଆସନ୍ତ ଛେକଣ ଯେ ହାପିଲେ ନାଶ କର ।”

ସାରଳା ଦାସ ମଲ୍ଲଯୁଦ୍ଧ ବିବରଣୀ ଦେବା ସଙ୍ଗେ ସଙ୍ଗେ ମନ୍ତ୍ର ସାହାଯ୍ୟରେ କପରି ବାଣ ପ୍ରେରଣ କରଯାଏ ଏବଂ ତାହା କପରି ପ୍ରତିହତ ହୁଏ, ତାହା ମଧ୍ୟ ଉଲ୍ଲେଖ କରିଛନ୍ତି । ଇନ୍ଦ୍ର-ଅର୍ଜୁନ ଯୁଦ୍ଧ ସମ୍ପର୍କରେ ସେ ଲେଖିଛନ୍ତି—

“ନିର୍ଘାତ ବାଣ ଯେ ମାଇଲେ ବଜ୍ରପାଣି
ତିନି ଭୁବନେ କମ୍ପିଲ ନିର୍ଘାତ ଶବ୍ଦ ଶୁଣି ।
ଅଗ୍ନି ଦେବତା ଏ ବୋଇଲେ ତୁ ନ କର ମନେ ଭ୍ରାନ୍ତି
ବଜ୍ର ପରଶୁ ଯେନି ଛେଦ ହୋ ସୂତକୋନ୍ତି ।
ହେମଶର ପେଷ ବାବୁ ନିର୍ଘାତ ଉପରେ
ଅଗ୍ନିଙ୍କ ବାକ୍ୟେ ମାଇଲେ ପାର୍ଥ ହେମ ଶରେ ।
ହେମଶର ପଡ଼ନ୍ତେ ଯେ ନିର୍ଘାତ ଶର ନାଶ ଗଲା
ସାଧୁ ସାଧୁ ଅର୍ଜୁନ ବୋଲି ଧ୍ୱନିପ୍ୱେ ଶୁଭିଲା ।
ସ୍ୱଗେଣ ଦେବ ଯେ ମାଇଲେ ବଜ୍ରସୂଚୀ
ବଜ୍ର ପରଶୁ ଯେନିଣ ତାହା ନାଶିଲା ସବ୍ୟସାଚୀ ।
ଇନ୍ଦ୍ର ପ୍ରହାର କଲେକ ବଜ୍ର ଶକତି
ଅମୋଘ ଶକତି ଯେନି ଅର୍ଜୁନ ନିପାତି

ପଦ୍ମତାଶରେକ ଯେ ପେଷିଲେ ଜମ୍ବୋଭେଦୀ
ବଜ୍ରାବଳୀ ସହସ୍ର ଯେମନ୍ତ ଅର୍ଜୁନ ତାହା ଛେଦି ।

ସଂଗ୍ରାମେଣ ସମ୍ମୁଖ ପାଇଣ ବୀରବର ପାର୍ଥ
ମନଭେଦୀ ନାରାଚ ଯେ ଧଇଲେକ ହାତ ।

ଗୁଣରେ ବସାଇ ଛାଆରଇ ତାକୁ ଧନୁର୍ଦ୍ଧରେ
ସ୍ୱେ ମୋହର ପିଅର ଯେ ଅନନ୍ତ ଦେବଗସ୍ତେ ।

ଯେମେବେ ନାରାଚ ଯେ ପଡ଼ିବୁ ଇନ୍ଦ୍ରଦେହେ
ପ୍ରାଣେ ନ ମାରିବୁ ସେ ପଡ଼ିବ ହାଦେ ମୋହେ
ଅର୍ଜୁନର ଆଜ୍ଞାଂରେ ସେ ନାରଚ ମନଭେଦୀ
ଇନ୍ଦ୍ରଦେବତାଙ୍କର ଶଗ୍ଧରେ ଯାଇଣ ସଂପାଦି ।”

ସେ ବେଳରେ ଏଭଳି ଯୁଦ୍ଧରେ ଶୂଳ, ଗରୁଡ଼, ପନ୍ନଗ; କାଳପାଶ, ଦମନ, ମୋହନ, ସୋମକାନ୍ତ, ମାଳବାଣ, ଭୁଜଙ୍ଗବାଣ, କାଳାନଳ, ହାବୋଡ଼ା, ମନଭେଦ, ବଜ୍ରମୂନା, ଅର୍ଦ୍ଧଚନ୍ଦ୍ର, ପଞ୍ଚଶାଖା, ନାଗପାଶ ଓ କାଳପାଶ ପ୍ରଭୃତି ଅସ୍ତ୍ରର ପ୍ରଚଳନ ଥିଲା ।

ରଜାମାନେ ଯୁଦ୍ଧରେ ଅନୀତି କରୁ ନ ଥିଲେ । ପଳାଇଲା ଶତ୍ରୁକୁ ଗୋଡ଼ାଇ ମାରୁ ନ ଥିଲେ । ସମ୍ମୁଖ ସମର କରୁଥିଲେ । ଶରଣାଗତ ଜନକୁ କ୍ଷମା ପ୍ରଦାନ କରୁଥିଲେ । ତେଣୁ ଦ୍ରୁପଦ ଅର୍ଜୁନଙ୍କଠାରୁ ପରାଜିତ ହେବା ପରେ ସାରଳା ଦାସ ଲେଖିଛନ୍ତି—

“ଦ୍ରୋପଦ ବୋଇଲା ମୁଁ ଦ୍ରୋହ କରିଛୁ ଦ୍ରୋଣଙ୍କୁ
ହେ ଅର୍ଜୁନ ତୁମ୍ଭେ ଯେ ଶରଣ ରଖ ମୁଙ୍କୁ ।
ଅର୍ଜୁନ ବୋଇଲେ ମୁଁ କରିବି ସ୍ନେହ ଶାନ୍ତି
ଗୁରୁଙ୍କ ବଚନେ ଶିଷ୍ୟେ ଆଆନ୍ତି ବର୍ତ୍ତି ।

ତୋର ଗୋଟିଏ ଘେନ ବାନ୍ଧିବ ଯେ କର
ଯେତିକି କ୍ଷେ ତାତ ମୋତେ କୋପ ଯେ ନ କର
ଶାନ୍ତି ଦେଖିଣ ତୋତେ ଦୟା କରନ୍ତୁ ଦ୍ରୋଣେ
ଚରିକୋଟୀ ନୋହନ୍ତୁ ସେ ମହାଶାନ୍ତ ବ୍ରାହ୍ମଣେ ।”

ମୋଟ ଉପରେ ସାରଳା ଦାସ ତାହାଙ୍କ ବର୍ଣ୍ଣନାରେ ସୈନ୍ୟରଚନା, ମଲ୍ଲଯୁଦ୍ଧ, ଅସ୍ତ୍ରଯୁଦ୍ଧ ଓ ଯୁଦ୍ଧର ନୟମାବଳୀ ସମ୍ପର୍କରେ ଯାହା ଲେଖିଛନ୍ତି, ତାହା ପାଠ କଲା ମାତ୍ରେ ପାଠକ ନିଜ ଆଖି ଆଗରେ ଯୁଦ୍ଧ ଦେଖୁଥିବା ପରି ଅନୁଭୂତ ହୋଇପଡ଼େ ।

## ବଳରାମ ଦାସ—

ରାମାୟଣର ଲେଖକ ବଳରାମ ଦାସ ସାରଳା ଦାସଙ୍କ ପରି ଯୁଦ୍ଧବର୍ଣ୍ଣନାରେ ସିଦ୍ଧହସ୍ତ । ସେତେବେଳେ ଗଡ଼ ବା ଦୁର୍ଗ ରାଜ୍ୟ-ରକ୍ଷାର ମୁଖ୍ୟ କେନ୍ଦ୍ର ଥିଲା । ଦୁର୍ଗର ପ୍ରସ୍ତରନିର୍ମିତ କାନ୍ଥରେ କ୍ଷୁଦ୍ର କ୍ଷୁଦ୍ର ଜକା ଥିଲା । ତା’ ମଧ୍ୟଦେଇ ଶରଗୁଡ଼ିକ ବାହାରକୁ ଆସୁଥିଲା । ଦୁର୍ଗର ଚାରିପାଖରେ ଗଭୀର ପରିଖା ଥିଲା ଓ ତହିଁରେ କୁମ୍ଭୀର ପ୍ରଭୃତି ହିଂସ୍ର ଜଳଜନ୍ତୁମାନେ ରହୁଥିଲେ । ଦୁର୍ଗର ଦ୍ୱାରରେ ଲୌହନିର୍ମିତ କବାଟ ଥିଲା । ଦୁର୍ଗର କାନ୍ଥ ଉପରେ ପ୍ରହରୀମାନେ ରହି ଦୁର୍ଗକୁ ଜଗୁଥିଲେ । ବହିଃଶତ୍ରୁ ଦୁର୍ଗ ନିକଟରେ ପହଞ୍ଚିବା ମାତ୍ରେ ଦୁର୍ଗଦ୍ୱାର ବନ୍ଦ ହୋଇଯାଉଥିଲା । ଆବଶ୍ୟକବେଳେ ଦୁର୍ଗରୁ ପଳାଇଯିବା ପାଇଁ ଗୁପ୍ତ ସୁଡ଼ଙ୍ଗ ମଧ୍ୟ ଥିଲା । ଲଙ୍କାପୁରୀ ଏହିପରି ଏକ ଅଭେଦ୍ୟ ଦୁର୍ଗ । ମାତ୍ର ଦୁର୍ଗଦ୍ୱାର ଭାଙ୍ଗି ରାମଚନ୍ଦ୍ରଙ୍କର ବାନରସେନା ଦୁର୍ଗ ମଧ୍ୟରେ ପ୍ରବେଶ କଲେ । ରାବଣର ପୁତ୍ର ଇନ୍ଦ୍ରଜିତ ଦେବଦଳନ ରଥରେ ଯୁଦ୍ଧକୁ ଗମନ କଲା ।

ମହାଭାରତରେ ଭୀମ ଯେପରି ପରାକ୍ରମୀ, ରାମାୟଣରେ ହନୁମାନ ମଧ୍ୟ ସେହିପରି । ଇନ୍ଦ୍ରଜିତ ଯୁଦ୍ଧକୁ ଆସିବାରୁ ହନୁମାନ ହାତୀକୁ ହାତୀ ଉପରେ, ଘୋଡ଼ାକୁ ଘୋଡ଼ା ଉପରେ ଓ ରଥକୁ ରଥ ଉପରେ କଚାଡ଼ି ଯୁଦ୍ଧ ଆରମ୍ଭ କଲା । ମାତ୍ର ଇନ୍ଦ୍ରଜିତ ଅଦ୍ୱିତୀୟ ଧନୁର୍ଦ୍ଧର । ଇନ୍ଦ୍ରଙ୍କୁ ଜୟ କରି ସେ ଇନ୍ଦ୍ରଜିତ ନାମ ଧାରଣ କରିଛି । ପୁଣି ତାହାର ରଥ ଯଜ୍ଞରୁ ଉତ୍ପନ୍ନ । ଇଚ୍ଛା ଅନୁସାରେ ସେ ରଥ ପରିଚାଳିତ ହୁଏ । ଇନ୍ଦ୍ରଜିତ ଆକାଶରେ ଲୁଚି ରହି ରାମଙ୍କ ସହ ଯୁଦ୍ଧ କରିଛି । ଏ ଯୁଦ୍ଧରେ ମାନବନିର୍ମିତ ଅସ୍ତ୍ରଶସ୍ତ୍ର ସହ ଦିବ୍ୟାସ୍ତ୍ରର ମଧ୍ୟ ପ୍ରୟୋଗ କରାଯାଇଛି । ରାମ ଓ ଇନ୍ଦ୍ରଜିତ ଦୁହେଁ ଦିବ୍ୟାସ୍ତ୍ରର ଅଧିକାରୀ । ଶରର ପ୍ରତିକାର ବିଧାନ ଦୁହେଁ ଜାଣନ୍ତି । ବଳରାମ ଅସ୍ତ୍ରଗୁଡ଼ିକର ବର୍ଣ୍ଣନା ଦେଇ ଲଙ୍କାକାଣ୍ଡରେ ଉଲ୍ଲେଖ କରିଛନ୍ତି—

"ବଜ୍ରାଣର ଆବର ଯେ ବ୍ରହ୍ମଶିରକାଣ୍ଡ
ମେଘାଣର ଘାତରେ ଯେ କମ୍ପଇ ବ୍ରହ୍ମାଣ୍ଡ ।
ଗରୁଡ଼ ବନରା ଆଦି ଯେତେ ଅସ୍ତ୍ର ଅଛି
ପନ୍ନଗାଣରର ଘାତେ ସୂର୍ଯ୍ୟ ଚନ୍ଦ୍ର ଲୁଚି ।
ଗନ୍ଧର୍ବ ମାନବାଣର ସୂର୍ଯ୍ୟସମ ଆଭା
ସାବଶୀ କାଳୀ ବାରୁଣୀ ଅଧାଚନ୍ଦ୍ର ଶୋଭା
ବଜ୍ରମୁନା ଆଦି ଜୟା ବିଜୟା ଶକତି
ଅମୋଘ ଶକତି ବଜ୍ର ଶକତି ମାରନ୍ତି ।
ଲୌହ ମୁଦ୍‌ଗର ଗଦାକର ପଡ଼ୁଛନ୍ତି
ମହାମାୟା ଶୂଳ ବଜ୍ରଠାରୁ ହଂସକାନ୍ତି
ଶିବଶୂଳ ଚକ୍ର ଯେ ଅପୂର୍ବ ଶରମାନ
ଏକକୁ ଆରେକେ ଯେ ବିନ୍ଧନ୍ତି ଘନ ଘନ ।"

ଉବ୍ୟାସ୍ତ ସହିତ ମଲ୍ଲଯୁଦ୍ଧର ବର୍ଣ୍ଣନା କରି ବଳରାମ ଲେଖିଛନ୍ତି—

"କେହୁ ମଲ୍ଲଯୁଦ୍ଧ କରି ଗଡ଼ ଗଡ଼ ଯାନ୍ତି
କେହୁ ବାଧା ଋପୁଡ଼ା ଯେ ମଗମର ହୋନ୍ତି ।
କେ ବୁକୁ ଧରିଣ ଯେ ଛୁନ୍ଦାଇ କାହା ତଣ୍ଟି
କେହୁ ବାଧା ମାରଇ କାହାର ଧରି ଚୁଟି
କେ ବୁକୁ ବଦାରି ଅନ୍ତ କରଇ ବାହାର
ରକତରେ ଜରଜର କାହା ଦୁଇ କର ।"

ବଳରାମ ଦାସଙ୍କର ଏହି ବର୍ଣ୍ଣନାଗୁଡ଼ିକରୁ ମନେହୁଏ ଯେ, ଯୁଦ୍ଧ ରୀତିନୀତି ଜାଣି ସେଗୁଡ଼ିକ ଭଲ ଭାବରେ ହୃଦୟଙ୍ଗମ କରି ସେ ବର୍ଣ୍ଣନା କରିଛନ୍ତି । ତେଣୁ ଚିତ୍ରଗୁଡ଼ିକ ଜୀବନ୍ତ ପରି ମନେ ହୁଏ ।

## ରୀତିଯୁଗ

### ଅର୍ଜ୍ଜୁନ ଦାସ:—

ସାରଳା ଓ ବଳରାମଙ୍କ ପ୍ରାଚୀନ ଯୁଗର ଯୁଦ୍ଧ ବର୍ଣ୍ଣନା ପରେ ଓଡ଼ିଆ ସାହିତ୍ୟରେ ଯୁଦ୍ଧ ସମ୍ପର୍କୀୟ ବର୍ଣ୍ଣନାରେ ରୀତିଯୁଗର କବି ଅର୍ଜ୍ଜୁନ ଦାସଙ୍କ 'ରାମବିଭା' ଆଲୋଚ୍ୟ । ଏଠାରେ ଉଲ୍ଲେଖ କରାଯାଇପାରେ କି ରୀତିଯୁଗର କବିଙ୍କ ଦୃଷ୍ଟି ସାଧାରଣତଃ ନାୟକ ନାୟିକାଙ୍କ ଶୃଙ୍ଗାର ବର୍ଣ୍ଣନା ଉପରେ ନିବଦ୍ଧ । ତେଣୁ ଅର୍ଜ୍ଜୁନ ଦାସଙ୍କର ରାମବିଭାର ଯୁଦ୍ଧବର୍ଣ୍ଣନାରେ କୌଣସି ମୌଳିକତା ଥିବା ପରି ମନେହୁଏ ନାହିଁ । ଉଦାହରଣ ସ୍ୱରୂପ:—

"ବୀର ବେଶ ହୋଇଣ ଶ୍ରୀରାମ   କୁମାର ମୂରତି ଯେ କାମ
ସଙ୍ଗେଣ ସାନୁଜ ବୀର   ଆଜାନୁ ଭୁଜେ ଧନୁଶର

ରଣ ରଙ୍ଗରେ ଅତି ଶ୍ରଦ୍ଧା          ମୃଗ ଘାତଧିରେ ଯେହ୍ନେ ଲୋଧା
ଶୁଣିଣ ମୁଖ ଚନ୍ଦନ          ଧାମନ୍ତି ନିଶାଚର ବଳ
ତର୍ଜନ ଗର୍ଜନ କରି          ଆସନ୍ତି ବନ ଗିରି ପୂରି
ନିକଟେ ହୋଇଲେ ଆସି          ରାମ ଦେଖନ୍ତି ଲୁଚି ବସି
ପଡ଼ିଲ ଦନୁଜ ଧାଡ଼ି          ଋଷି ପଳାନ୍ତି ଯାଗ ଛାଡ଼ି
ଲତାରୁ ରାମ ବାହାରି          ତୂରିତେ ସନ୍ଧିଲେ ଶରି
ବନ୍ଧଣ ଲକ୍ଷ୍ମଣ କୋଟି          ଦାନବ ବଳ ମଣ୍ଟି ଲେଟି
ମାରୀଚ ସୁବାହୁ ବେନି          ଯୁଝନ୍ତି ଶାଳଶିଳ ଘେନି
ଶ୍ରୀରାମ ପେଷିଲେ ବାଣ          ଗୁଡ଼ିଲ ସୁବାହୁ ପରାଣ
ମାରୀଚ ଭାଇର ବଳେ          ରାମଙ୍କୁ ଓଗାଳିଲା ବଳେ
ହାତୋଡ଼ା ଶର ଏକ ସନ୍ଧି          ରାମ ତା ହୃଦୟକୁ ବିନ୍ଧି
ନାରାଜ ଘେନିଣ ସେ ଉଡ଼ି          ଶତ ଯୋଜନ ଦୂରେ ପଡ଼ି ।"

## କାର୍ତ୍ତିକ ଦାସ:—

ରାମବିଭା ପରି କାର୍ତ୍ତିକ ଦାସଙ୍କ 'ରୁକ୍ମଣୀବିଭା'ରେ ମଧ୍ୟ ଅନୁରୂପ ନୈସର୍ଗ୍ୟଜନକ ଯୁଦ୍ଧ ବର୍ଣ୍ଣନା ଦେଖିବାକୁ ମିଳେ । ଯଥା:—

"ନେଲା ନେଲା ଗଲା ଗଲା ବାଜଲାକ ଗୋଳ
ଧାଇଁଲେକ ରଥୀ ହାଣ୍ଡି ନୃପତି ସକଳ ।

ରୁକ୍ମଣୀକି ଘେନିଗଲେ ପ୍ରଭୁ ଚକ୍ରଧର
ହାଣ୍ଡି ହାଣ୍ଡି ରଥେ ରଥେ ବାଜଲା ସମର ।

ଜରାସନ୍ଧ ବଳ ଘେନି ଅଚ୍ଛନ୍ତି ଗୋଡ଼ାଇ
ଆଗେ ଓଗାଳିଲେ ଆସି ରେବତୀର ସାଇଁ ।

ଜରାସନ୍ଧ ସଂଗତେ ସମର ହଳପାଣି
ମାଇଲେ ଅନେକ ରଥୀ କବନ୍ଧ ମାରେଣି ।
ଅନେକ ସମର ଚନ୍ଦ୍ରଁ କଳକ ରୁକ୍ମଣି
କାଟିଲେ ତାହାର ରଥୁଁ ଅଶ୍ୱ ଧନୁବାଣ ।
ଧରି ନେଇ କେଶ ତାର ସାତ ଭାଗ କଲେ
ରଥର ସ୍ତମ୍ଭରେ ନେଇ ବାନ୍ଧି ପକାଇଲେ ।”

## ଶିଶୁଶଙ୍କର ଦାସ:—

ଶିଶୁଶଙ୍କର ଦାସଙ୍କର ‘ଉଷାଭିଳାଷ’ କାବ୍ୟରେ ଯୁଦ୍ଧ ମଧ୍ୟ ଅତି ଗୌଣସ୍ଥାନ ଅଧିକାର କରିଅଛି । କବି ‘ଉଷାଭିଳାଷ’ର ଦଶମ ଏବଂ ଦ୍ୱାଦଶ ଛାନ୍ଦରେ ଏପରି ଭାବରେ ଯୁଦ୍ଧର ବର୍ଣ୍ଣନା କରିଛନ୍ତି ଯେ, ପାଠକର ମନେହୁଏ ସତେ ଯେପରି ଯୁଦ୍ଧ ବିଷୟରେ ତାଙ୍କର କୌଣସି ଧାରଣା ନାହିଁ । ଉଷା ଅନିରୁଦ୍ଧଙ୍କର ବିରହ-ମିଳନହିଁ କାବ୍ୟର ମୁଖ୍ୟ ବିଷୟବସ୍ତୁ ହୋଇଥିବାରୁ ଯୁଦ୍ଧର ବର୍ଣ୍ଣନା ଦୁର୍ବଳ ହୋଇପଡ଼ିଛି ।

“× × × ତା ଆଶ୍ୱାସ କରି
ଲୌହ ପରିଘ ଖାଇ କରେ ଧରି
ସୂର୍ଯ୍ୟମଣି ଯେହ୍ନେ ରବିକି ଦେଖି
ତେସନେ ଖାର ଦନୁଜ ନିରେଖି
ବିକ୍ରମେ ବିକ୍ରମ କେଶରୀ ମତ
ବହୁତ ସୈନ୍ୟ ସେ କଲା ନିପାତ
ତା ପରିଘ ଘାତେ
ମୋହ ହୋଇଲା ବାଣାସୁରର ରଥେ ।” (ଦଶମ ଛାନ୍ଦ)

"ଝମକ ନଶାଣ ଭେରୀ ମୃଦଙ୍ଗ କାହାଳ
ବେଣୁ ବୀଣା ଶଙ୍ଖ ମିଣ୍ଡି ଶୁଭଇ ତହଳ
ଜଳଧି ମନ୍ଥନେ ଯେହ୍ନେ ଶୁଭେ ସିନ୍ଧୁଘୋଷ
ପାଞ୍ଚଜନ୍ୟ ଶବ୍ଦେ ପୂରେ ଦଶ ଦିଶ ।

× × ×

ହରିହର ବେନି କଲେ ସମର ଯେ ଘୋର
ତ୍ରିପୁର ଭସ୍ମେ କମ୍ପେ ଦେଖନ୍ତି ଅମର
ପିତାମହ ଶାନ୍ତ କରି ଛୁଡ଼ାଇଲେ ଶିବ
ଜଗନ୍ନାଥ ସଙ୍ଗେ ବାଣା ଯୁଦ୍ଧେ ଅସମ୍ଭବ
ତହୁଁ ଯେବେ ହାଣନ୍ତେ ତା ରଖିଲେ ଭବାନୀ
ରୋଷେ ବାହୁବଳ ଛେଦି ଛୁଡ଼ାଇଲେ ବେନି ।"

( ଦ୍ୱାଦଶ ଯୁଦ୍ଧ )

## ଭକ୍ତଚରଣ:—

କବି ଭକ୍ତଚରଣଙ୍କର 'ମଥୁରାମଙ୍ଗଳ' କାବ୍ୟ ସମ୍ପୂର୍ଣ୍ଣ ଉପଜୀବ୍ୟ କରି ରଚିତ ହୋଇ ନ ଥିଲେ ମଧ୍ୟ କୃଷ୍ଣ-ବଳରାମଙ୍କର ଚାଣୁର ସହିତ ହୋଇଥିବା ସଂଗ୍ରାମକୁ ମଲ୍ଲଯୁଦ୍ଧର ପର୍ଯ୍ୟାୟଭୁକ୍ତ କରାଯାଇପାରେ ।

ଚାଣୁର ଏବଂ ମୁଷ୍ଟିକ ଦୁହେଁ କଂସର ମଲ୍ଲଯୋଦ୍ଧା । ଏମାନଙ୍କ ହସ୍ତରେ କୃଷ୍ଣଙ୍କୁ ମରାଇବା ପାଇଁ କଂସ ଧନୁ ଉତ୍ସବର ଆୟୋଜନ କରିଥିଲା । କୃଷ୍ଣ ଯେତେବେଳେ କଂସ ନିକଟକୁ ଯିବାକୁ ବସିଲେ, ସେତେବେଳେ ଚାଣୁର ଓ ମୁଷ୍ଟିକ ତାହାଙ୍କର ପଥରୋଧ କରିଛନ୍ତି । ଫଳରେ ସଂଗ୍ରାମ ଆରମ୍ଭ ହୋଇଛି । ଭକ୍ତଚରଣ ଦାସ ଲେଖିଛନ୍ତି—

"କୃଷ୍ଣ ଚାଣୁର ସମର ଗୁରୁତର
ଥର ଥର ଧରା ହୋଇଲା
କୃଷ୍ଣ ବଳବୀର୍ଯ୍ୟ ଜାଣି ନିଶାଚର
ଡରରେ ମରଣ ହୋଇଲା

କାହିଁକି, କଳାଟି ରାଜନ ବଚନ
ହରି କୋପାନଳ ଅନ୍ତହିଁ ପ୍ରବଳ
ଦହିବ ମୋ ତୃଣ ଜୀବନ ।

ଏତେବେଳେ ଯୁଦ୍ଧ ନିଶ୍ଚିତ ହୋଇବ
ନିନ୍ଦା କରିବେ ରାଜାମାନେ
ସମରେ ଜୀବନ ହୋଇଲେ ନିଧନ
ସୁଖେ ବସିବି ସ୍ୱର୍ଗସ୍ଥାନେ ।

ଏମନ୍ତ, ଭାଳି କରେ ଗାଢ଼ ସମର
ମୁଷ୍ଟିକ ମୁଷ୍ଟି ପଡ଼ ଚାଳ କରନ୍ତେ
ଶବଦେ କମ୍ପେ ତିନିପୁର ।
ବାହେ ବନ୍ଧାବନ୍ଧି ମୁଣ୍ଡେ କୋଡ଼ାକୋଡ଼ି
ଛିପ୍ପାକୁ ଛିପ୍ପା ପ୍ରହାରନ୍ତି
ଜାନୁକୁ ଜାନୁ ପାଦକୁ ପାଦ ଛନ୍ଦି
ପଡ଼ି ଉଠି ପୁଣି ଗଡ଼ନ୍ତି
ନାସିକା, ପବନ କି ଅବା ବତାସ
ଅଙ୍ଗକୁ ଅଙ୍ଗ ଠେସାଠେସି ହୁଅନ୍ତେ
ବାହାର ହୁଅଇ ହୁତାଶ ।

ରଣକ୍ଷେତ୍ରରେ ସେମାନେ ନିଜ ନିଜର ଶକ୍ତିର ପରିଚୟ ଦେଇଛନ୍ତି । ପରସ୍ପର ଧରାଧରି ହୋଇ, ମୁଣ୍ଡ କୋଡ଼ାକୋଡ଼ି,

ଘୁଷିକି ଘୁଷି ମଗ୍ରମର, ଜାନୁକୁ ଜାନୁ, ପାଦକୁ ପାଦ ଛନ୍ଦାଛନ୍ଦି, ବାହା ମଗ୍ରମର; ମୁଥ ମଗ୍ରମର ଓ ଗଡ଼ାଗଡ଼ି ପରେ ଚାଣୁର-ମୁଷ୍ଟିକ ମରି ଶୋଇଲେ । ସେହିପରି ଗୋଟିଏ ଗୁପୋଡ଼ରେ ରଜକ ମରିଥିଲା । ବେଣ୍ଟ ଠୁକଲକ୍ଷଣି କୁବଳୟା ହସ୍ତୀ, ହସ୍ତୀଦନ୍ତର ଏକ ପ୍ରହାରରେ ମାହୁନ୍ତ, କେଶକୁ ଧରିବା ମାତ୍ରେ କଂସ ମରିଯାଇଥିଲା । ତେଣୁ ଏଥିରେ ଯୁଦ୍ଧର ପ୍ରକୃତ ବର୍ଣ୍ଣନା କରାଯାଇ ନାହିଁ ।

**ଉପେନ୍ଦ୍ରଭଞ୍ଜ:—**

କବିସମ୍ରାଟ ଉପେନ୍ଦ୍ରଭଞ୍ଜ ଶ୍ରେଷ୍ଠ ଶୃଙ୍ଗାରରସିକ ତଥା ଆଳଙ୍କାରିକ କବି ଭାବରେ ଉତ୍କଳରେ ସୁପରିଚିତ । ତାଙ୍କର ପ୍ରତ୍ୟେକ କାବ୍ୟ-ନାୟକ ପ୍ରେମିକ । ପ୍ରେମ ବିନା, ପୌରୁଷ ବା ବୀରତ୍ୱରେ ସେମାନଙ୍କର ଚରିତ୍ର ମହନୀୟ ହୋଇପାରି ନାହିଁ । ଯଦିବା 'ବୈଦେହୀଶବିଳାସ' ଏବଂ 'କୋଟିବ୍ରହ୍ମାଣ୍ଡସୁନ୍ଦରୀ' କାବ୍ୟରେ କବି ସମରର ବର୍ଣ୍ଣନା କରିଛନ୍ତି; ତଥାପି ମନେ ହୁଏ— ଶୃଙ୍ଗାରର ବର୍ଣ୍ଣନା ବିଳାସ ମଧ୍ୟରେ ଯୁଦ୍ଧର ବାସ୍ତବ ବିଭୀଷିକା ଓ ବିକଟତା ଯେପରି କେଉଁଆଡ଼େ ହଜିଯାଇଅଛି ।

ରାମ-ଲକ୍ଷ୍ମଣ ବାନର ପୃଷ୍ଠରେ ରଣକ୍ଷେତ୍ରରେ ଅବତୀର୍ଣ୍ଣ ହୋଇଛନ୍ତି । ବନରେ ତାଡ଼କା-ରାମ ଯୁଦ୍ଧ, ସୁବାହୁ-ମାରିଚ ଯୁଦ୍ଧ, ବାଳୀ-ସୁଗ୍ରୀବ ଯୁଦ୍ଧ, ଲଙ୍କାରେ ରାମ-ରାବଣ ଯୁଦ୍ଧ, ଇନ୍ଦ୍ରଜିତର ମାୟାଯୁଦ୍ଧ ଓ କୁମ୍ଭକର୍ଣ୍ଣର ମଲ୍ଲଯୁଦ୍ଧ କବି ଲେଖନୀରେ ସରସ ହୋଇଛି । କିନ୍ତୁ ବର୍ଣ୍ଣନା କାଳ୍ପନିକ ହୋଇଥିବାରୁ ଅତିରଞ୍ଜିତ ହୋଇଥିବାର ମନେ ହୁଏ ।

ଯୁଦ୍ଧର ବୀଭତ୍ସ ବିକଟତା ବର୍ଣ୍ଣିବାରେ କବି ସ୍ଥାନେ ସ୍ଥାନେ କୃତିତ୍ୱ ଦେଖାଇଛନ୍ତି । ରାମଚନ୍ଦ୍ରଙ୍କ ଅମୋଘ ଅସ୍ତ୍ର ରାକ୍ଷସଙ୍କୁ

ଆକାଶକୁ ଉଡ଼ାଇ ନେଇ ସେଠାରେ ଅନ୍ତରୁକ୍ଲା ବାହାର କରି- ଦେଉଛି । ଗୃଧ୍ରମାନେ ଶୂନ୍ୟେ ଶୂନ୍ୟେ ଶବକୁ ନେଇ ଉଡ଼ି ଯାଉଛନ୍ତି । ଯଥା:—

"ବଜସ୍ମୀ କନ୍ଧଘୋଷରେ ବଜସ୍ମୀ ଧନୁଘୋଷରେ
କଇଳାସ ବଳାସ ଛାଡ଼ାଇ ଅଣାଇ
ବାଛୁ ସାର ଯୋଦ୍ଧାବ୍ରାତ ମୂର୍ଦ୍ଧାଫାଳ ଫାଳକୃତ
ବକ୍ଷ ଶର କଷାପିତ୍ତ ମାଂସ ଭକ୍ଷଇ
ବାଜନାମ୍ଭୁଁ, ବସ୍ତିରେ ଜାଣି ମିତ୍ରତା କର
ବଢ଼ର ଶବ ବପୁକେ ଯେଣ ସେ ତୋଷେ ଭକ୍ଷନ୍ତେ
ଭରମ୍ଭୁଁ ଥିଲେ ରକତେ ପଶି ନ ପାର ।
(ବୈ: ବଳାସ)

ରମଣୀ କବିମାନସ କପରି ଆଚ୍ଛନ୍ନ କରିଥିଲା, ତାହା ବଭିନ୍ନ ସଂଗ୍ରାମ ବର୍ଣ୍ଣନାରୁ ଜଣାଯାଏ । ସଂଗ୍ରାମର ଗୁରୁତ୍ୱ ବା ବକଟତା ଏହି ଉପମା ଫଳରେ ବହୁ ପରିମାଣରେ ହ୍ରାସ ପାଇଅଛି । ଚମ୍ପା ନଗରକୁ ପଠାଇରେ ଯାଉଥିବା ସୈନ୍ୟ ସାମନ୍ତମାନଙ୍କ ଗତିକୁ କବିସମ୍ରାଟ ରମଣୀବୃନ୍ଦର ଗତି ସହିତ ତୁଳନା କରିଛନ୍ତି । ଯଥା:—

ସୁନ୍ଦରୀ କଳାତିଳକ ପରି ଖଡ଼୍ଗ, ଭାଲ ପରି ଫଳକ, ନାସା ପରି ତୂଣୀର, କଟାକ୍ଷ ପରି କୁନ୍ତ, ଚତୁର୍ବିଧ ବାହିନୀ, ଚତୁର୍ବିଧ ବାଦ୍ୟ, ଅଞ୍ଚଳ ପରି ପତାକା, ଉଚ୍ଚ କୁଚ ପରି ରଥ, କଣ୍ଠଭୂଷା ହାର, ବଦ୍ରୁମମାଳା ପରି ରଥର ବଉଳ ଝରା, କର୍ଣ୍ଣଭୂଷଣ ପରି ରଥର ଚକ୍ର, କର୍ଣ୍ଣ ପରି ପାଶ (ରଥଦଣ୍ଡ), ଅଙ୍ଗର ଶୃଙ୍ଖଳା ପରି ତୁରଙ୍ଗ ରଙ୍ଗ, ପଦଗମ ଭଳି ଗତି-ଯତି ମତ୍ତମାତଙ୍ଗ ଗତି—

"ଖଡ୍ଗ ଗଫନକ ତିଳକ ଭଲ୍ଲ ବାଣ କମାଣ
ଭୃଭେଣ୍ଡ ମେଳ
ଭୃଶୀର ନାସା ଅତି ମଞ୍ଜୁଳ କୁନ୍ତକଟାକ୍ଷ ଯେ ।
ଚତୁରବଧ ବାଦ୍ୟ ବାଜେଣି କଳସ୍ୱନା ମୃଦ କିଂକଣୀ
ଚପଳ ଚେଳ ଅଞ୍ଚଳ ଜାଣି ଚଞ୍ଚଳେ ଦକ୍ଷ ଯେ
ଜଘ ଶତାଙ୍ଗ କୁଚ ବଳ୍କଳଖଙ୍ଗ ଯେ
ନସ୍ତେ ଭୂଷା ବଦ୍ରୁମ ମାଳକା ହାର ଯେ
ଚନ୍ଦ୍ର ଚାଟଙ୍କ ପାଶ ଯେ ଶୃଙ୍ଗ ଭୁରଙ୍ଗ ଇଙ୍ଗ ତରଙ୍ଗ ମତ
ମତ୍ତ ମାତଙ୍ଗ ଗମନ ଗତି ଫଗମେ ଭବ ଯେ ।" (କୋ: ବ୍ର: ସୁ:)

## ପୁରୁଷୋତ୍ତମ ଦାସ :—

ପୁରୁଷୋତ୍ତମ ଦାସଙ୍କ "କାଞ୍ଚିକାବେରୀ" ବ୍ରଜନାଥ ବଡ଼ଜେନାଙ୍କର 'ସମର ତରଙ୍ଗ' ପରି ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ । ମାତ୍ର କାଞ୍ଚିକାବେରୀରେ ଐତିହାସିକ ସତ୍ୟ ଦେଖିବାକୁ ମିଳେ ନାହିଁ । ଏହା କେବଳ ପ୍ରଚଳିତ କିମ୍ବଦନ୍ତୀକୁ ନେଇ ସୃଷ୍ଟି । ପରବର୍ତ୍ତୀ କାଳରେ ପୁରୁଷୋତ୍ତମ ଦାସଙ୍କର କାଞ୍ଚିକାବେରୀକୁ ଅବଲମ୍ବନ କରି ରଙ୍ଗଲାଲ ବନ୍ଦୋପାଧ୍ୟାୟ ବଙ୍ଗଳାରେ ଖଣ୍ଡିଏ କାବ୍ୟ ଲେଖିଥିଲେ । ରାମଶଙ୍କର ରାୟଙ୍କର 'କାଞ୍ଚିକାବେରୀ' ନାଟକ, ଗୋଦାବରୀଶ ମିଶ୍ରଙ୍କର 'ପୁରୁଷୋତ୍ତମଦେବ' ନାଟକ, କାଳିଚରଣ ପଟ୍ଟନାୟକଙ୍କର 'ଅଭିଯାନ' ନାଟକ ତାହାର ଅନୁପ୍ରେରଣାରେ ସୃଷ୍ଟି ହୋଇଥିଲା ବୋଲି ଜଣାଯାଏ ।

ଆଲୋଚ୍ୟ କାଞ୍ଚିକାବେରୀ କାବ୍ୟରେ ଜଗନ୍ନାଥ କେବଳ ଶାନ୍ତ ଓ ମୈତ୍ରୀର ଦେବତା ନୁହନ୍ତି । ସେ ଓଡ଼ିଆର ରକ୍ଷାକର୍ତ୍ତା, ଦୁର୍ଦ୍ଧର୍ଷ

ବୀର ଓ ଅପ୍ରତିଦ୍ୱନ୍ଦୀ ଯୋଦ୍ଧାଭାବରେ ଚିତ୍ରିତ । ଭକ୍ତର ମହତ୍ତ୍ୱ ରକ୍ଷାଲାଗି ସେ ପ୍ରତ୍ୟକ୍ଷ ସଂଗ୍ରାମରେ ଯୋଗ ଦେଇଛନ୍ତି । ଜଗନ୍ନାଥ ଓ ବଳରାମଙ୍କ ଯୋଦ୍ଧୃବେଶ କବି ବର୍ଣ୍ଣନା କରିଛନ୍ତି—

"ବେନି ପାଶ କମରରେ ଶୋଭେ ତଲବାର
ମୁନଙ୍କର ଜ୍ୟୋତି ଯେ ନିନ୍ଦଇ ଦିନକର ।
ଖଣ୍ଡାରେ ଯେ ଢାଲରେ ସୁବର୍ଣ୍ଣ ମୁଦପ୍ସାର
ହୀର ଗୁଚ୍ଛ୍ଫୁଲ ପଦକ ଯେ ତାରକାର ।
  ×        ×        ×
କାଞ୍ଚିକାବେରୀକ ଯେ ଆପଣେ ଆଗରେ କଟକାଇ
ଜଗନ୍ନାଥ ବଳଭଦ୍ର ସହ ବେନି ଭାଇ ।
ଅତ୍ୟନ୍ତରେ ସୁଶୋଭା ଦିଶିଲା ଦଶଦିଶ
ଢାଙ୍କିଦେଲେ ଝେପିମିଂବ ଧରଣୀ ଆକାଶ
ବାଜୁକଙ୍କ ବକ୍ଷୁଭରେ ଭୁଲ ଆଉ ଚିର
ମାଣିକ୍ୟର ଜାଜୁଲ୍ୟ ପତାକା ଫରଫର
କେତେବେଳେ ଚଳାନ୍ତି ଧୂଆନ୍ତି କେତେବେଳେ
ଡାହାଣ କରେ ବରଛି ବାଗ ବାମ କରେ ।

ବଳରାମ ଏବଂ ଜଗନ୍ନାଥ କାଞ୍ଚି ଦୁର୍ଗର ପଥରକାନ୍ଥମାନ ତାଡ଼ି ଧୂଳିସାତ୍ କରିଦେଲେ । କାହାକୁ ଖଣ୍ଡାରେ, କାହାକୁ ବର୍ଚ୍ଛାରେ, କାହାକୁ ଭଲରେ, କାହାକୁ ବନ୍ଧନ କରେ ବିନାଶ କରିବାକୁ ଲାଗିଲେ । କାଞ୍ଚିସୈନ୍ୟମାନେ ପ୍ରତି ଆକ୍ରମଣ କରିବାର ସୁଯୋଗ ନ ପାଇ ଭୟରେ ପଳାୟନ କରିବାକୁ ଲାଗିଲେ ।

କବିଙ୍କ ଦୃଷ୍ଟିରେ କାଞ୍ଚି ଯୁଦ୍ଧ ଦେବତାଙ୍କ ସହିତ ଦେବତାର ଯୁଦ୍ଧ । ଦେବତାଙ୍କର ଏହି ଶକ୍ତି ପରୀକ୍ଷାରେ ମନୁଷ୍ୟ ନିମିତ୍ତ ମାତ୍ର ।

ଜଗନ୍ନାଥ ଯେପରି ଜଙ୍ଗଳର, ଗଣନାଗ ସେହିପରି କାଞ୍ଚିର ଇଷ୍ଟ ଦେବତା । ସେ ବିଦ୍ୟାରେ ଯେପରି, ସଂଗ୍ରାମରେ ମଧ୍ୟ ସେହିପରି ଧୂରୀଣ । ବାମନ, ସ୍ଥୂଳ ଶରୀର, ଗଜବଦନ, ହସ୍ତରେ ପାଶାଙ୍କୁଶ ଧରି ମୂଷିକ ପିଠିରେ ବସି ସେ ମଧ୍ୟ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହୋଇଛନ୍ତି ।

ଜଗନ୍ନାଥ ବନ୍ଧୁଙ୍କ ଗୁଳିରେ କାଞ୍ଚିର ସୈନ୍ୟ ସଂହାର କରିବା ସ୍ଥଳେ ବଳରାମ ଓ ଗଣନାଥଙ୍କ ସଂଗ୍ରାମ ପୁରାଣ ଧରଣର ହୋଇଅଛି । ଗଣେଶ ଆକ୍ରମଣକାରୀ । ତାଙ୍କ ପର୍ବତ ଶରକୁ ବଜ୍ରଶରରେ, ଆଗ୍ନେୟାସ୍ତ୍ରକୁ ଜଳଧାରା ଅସ୍ତ୍ରରେ, ପନ୍ନଗ ଶରକୁ ଗରୁଡ଼ାସ୍ତ୍ରରେ ବଳରାମ ନିବାରଣ କରିଛନ୍ତି । ଏହାପରେ ଗଣେଶ ବିଶ୍ୱମୂର୍ତ୍ତି ଧାରଣ କରି ଶୂଳ ପ୍ରୟୋଗ କରିଛନ୍ତି । ବଳରାମ ଢାଲରେ ଆତ୍ମରକ୍ଷା କରିପାରିଛନ୍ତି । ଶେଷରେ ଜଗନ୍ନାଥ ବଳରାମଙ୍କୁ ଆଡ଼ କରି ଅଗ୍ରସର ହୋଇଛନ୍ତି । ଜଗନ୍ନାଥଙ୍କ ମନ୍ତ୍ରବଳରେ ତାଙ୍କ ଶ୍ୱେତ ଅଶ୍ୱ ମାର୍ଜାର ପାଲଟି ଗଣେଶଙ୍କ ବାହନ ମୂଷିକକୁ ଆକ୍ରମଣ କରିଛି ଏବଂ ସେ ନିଜେ ନୃସିଂହ ରୂପ ଧାରଣ କରିଛନ୍ତି । ସିଂହ ଦର୍ଶନରେ କାଞ୍ଚିର ହସ୍ତୀମାନେ ସ୍ୱପକ୍ଷ ସୈନ୍ୟଙ୍କୁ ମର୍ଦ୍ଦନ କରି ପଳାୟନ କରିଛନ୍ତି । ନୃସିଂହଙ୍କ ତେଜରେ ନିଜେ ଗଣପତି ମଧ୍ୟ ଅଚେତ ହୋଇପଡ଼ିଛନ୍ତି । ତା’ପରେ ସେ ଆସି ବଳରାମ ଏବଂ ଜଗନ୍ନାଥଙ୍କର ଶରଣ ପଶି କହିଛନ୍ତି—

“ନ ଜାଣିଣ ଯୁଦ୍ଧକଲି ଦ୍ରୋହୀ ହେଲି ଆସି
ଏବେ ଯାହା ଇଚ୍ଛା ତାହା କର ବ୍ରହ୍ମରାଶି
କର କର ହୋଇ ହସନ୍ତି ଶ୍ରୀଇ ଦେବେ
କି ହୋ ଗଣନାଥ ତୁମ୍ଭେ ନ ଥିଲ କି ଚିହ୍ନି ?

ଏବେ ଯାଇ କହ ଚୋଡ଼-ଗାଳକ ରାଜାଙ୍କୁ
ବହନ ପକାଉ ଗଡ଼ ଗୁଡ଼ଣ ଆମ୍ଭଙ୍କୁ ।"

ପୁରୁଷୋତ୍ତମଦେବଙ୍କ ସୈନ୍ୟ ଅପେକ୍ଷା କାଞ୍ଚିରାଜା କଳବର-କେଶରୀଙ୍କ ସୈନ୍ୟ ସୁଶିକ୍ଷିତ ଥିଲେ ମଧ୍ୟ ଦୈବୀଶକ୍ତି ନିକଟରେ ସେମାନଙ୍କୁ ପରାଜୟ ସ୍ୱୀକାର କରିବାକୁ ପଡ଼ିଛି । ତେଣୁ 'କାଞ୍ଚି-କାବେରୀ'ରେ ପୁରୁଷୋତ୍ତମଙ୍କ ବୀରତ୍ୱ ଚିହ୍ନିତ ନ ହୋଇ ଜଗନ୍ନାଥଙ୍କର ବୀରତ୍ୱ ଚିହ୍ନିତ ହୋଇଛି । ପୁରୁଷୋତ୍ତମଦେବ ଯେତେବେଳେ ନିଜର ବୀରତ୍ୱ, କୂଟନୀତି କୌଶଳ ବା ବଳିଷ୍ଠ ବ୍ୟକ୍ତିତ୍ୱ ନିକଟରେ ଅସହାୟ ହୋଇପଡ଼ିଛନ୍ତି, ସେତେବେଳେ ସେହି ଭକ୍ତପାଳନକାରୀ ଜଗନ୍ନାଥହିଁ ହୋଇଛନ୍ତି ତାଙ୍କର ରକ୍ଷାକର୍ତ୍ତା ଓ ସହାୟକ । ତଥାପି ଏ ସମସ୍ତ ବ୍ୟତୀତ ରାଜା ପୁରୁଷୋତ୍ତମଙ୍କ ଯୁଦ୍ଧଯାତ୍ରାର ଚିତ୍ର ଅତ୍ୟନ୍ତ ମନୋରମ ହୋଇଅଛି । ତାଙ୍କ ସହିତ ଶ୍ୱେତମେଘା, କାଳମେଘା, ସିନ୍ଧୁପୁରିୟା, କଣ୍ଟୁଙ୍ଗୀ ଟାଙ୍ଗଣଜାତୀୟ ବହୁ ଅଶ୍ୱ ଥିଲେ । ସୈନ୍ୟମାନେ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ଥିଲେ । ବହୁ ଶକଟରେ ରସଦ ବୁହା ହୋଇ ଯାଉଥିଲା । ତମ୍ବୁ, ଭୁମ୍ବ, ଧମ୍‌କା, ରାମଚେଙ୍ଗି, ହାବେଳ, ଧନୁ, ଶର ପ୍ରଭୃତି ଦ୍ରବ୍ୟ ଓ ଅସ୍ତ୍ରଶସ୍ତ୍ର ସବୁ ବୁହାହୋଇ ଯାଇଥିଲା । ହସ୍ତୀ-ଉପରେ ନିଶାଣ ଉଡ଼ୁଥିଲା, ଓଟ ଉପରେ ଦମାମ୍, ଘୋଡ଼ାରେ ନାଗରା ଓ ଅସଂଖ୍ୟ ତୂରୀଭେରୀ, କର୍ତ୍ତାଳ ସଙ୍ଗେ ଅଶ୍ୱଙ୍କ ହ୍ରେଷା, ହସ୍ତୀଙ୍କ ଘଣ୍ଟାରବ ଓ ପଦାତିକଙ୍କ କୋଳାହଳ ଧ୍ୱନି ମିଶି ବଚିତ୍ର ଓ ଭୟଙ୍କର ଶବ୍ଦ ସୃଷ୍ଟି କରୁଥିଲା । କାଞ୍ଚିବିଜୟର ସଂକଳ୍ପ ଅନ୍ତରରେ ଘେନି ମକରଧ୍ୱଜକୁ ସ୍ମରି ରାଜା ଦକ୍ଷିଣ ପଥରେ ଯାତ୍ରା କରିଥିଲେ ।

କାଞ୍ଚିଗଡ଼ କଳାମୁଗୁନି ପ୍ରସ୍ତରରେ ନିର୍ମିତ । ଚତୁର୍ଦ୍ଦିଗରେ ପାଞ୍ଚକୋଶ ପର୍ଯ୍ୟନ୍ତ ଘଞ୍ଚ ଅରଣ୍ୟ, ଦୁର୍ଗମ ପର୍ବତଘାଟୀ । ସେଥିରେ

କାଞ୍ଚିସୈନ୍ୟ ଶତ୍ରୁବିନାଶ ଲଗି ଅହରହ ଜଗିରହିଥାନ୍ତି । ଦୁର୍ଗଦ୍ୱାର କବାଟ ଅତି ଶକ୍ତ, ଚତୁର୍ଦ୍ଦିଗରେ ଗଡ଼ଖାଇ । ଜଡ଼ାତେଲ ଢଳାହୋଇ ଦୁର୍ଗଦ୍ୱାର ମୃତ୍ତିକା ଅତ୍ୟନ୍ତ ପିଚ୍ଛିଳ କରାଯାଇଛି । କେହି ଛୁଡ଼ା-ହୋଇ ଯୁଦ୍ଧ କରିବା ଅସମ୍ଭବ । ମାତ୍ର ପୁରୁଷୋତ୍ତମଦେବ ପରି-ଶେଷରେ ଜଗନ୍ନାଥଙ୍କ କରୁଣାରୁ କାଞ୍ଚି ଜୟ କରିବାରେ ସକ୍ଷମ ହୋଇପାରିଛନ୍ତି ।

କାଞ୍ଚିକାବେରୀ ଯୁଦ୍ଧରେ ଗୁଳିଗୋଳା ଓ ଧନୁଶର ଉଭୟର ପ୍ରୟୋଗ ହୋଇଅଛି । ସୈନ୍ୟଙ୍କର ସାଜସଜ୍ଜା, ଅସ୍ତ୍ରଶସ୍ତ୍ର, ପଟୁଆର, ଯାନବାହାନ, ଯୁଦ୍ଧବାଦ୍ୟ, ଦୁର୍ଗର ସ୍ଥିତି, ଯୁଦ୍ଧର ରୀତି ପ୍ରତ୍ୟକ୍ଷଦର୍ଶୀ ଭାବରେ ବର୍ଣ୍ଣିତ ହୋଇଥିବା ଜଣାଯାଏ । ସୈନ୍ୟମାନଙ୍କ ଜାତିଭେଦ-ଶୂନ୍ୟତା ଓ କଠୋର ଜୀବନର ଚିତ୍ର ଅତ୍ୟନ୍ତ ମନୋରମ ହୋଇଅଛି । ଯଥା :—

"ସିପାହି ଲୋକ ଯେ ଆମ୍ଭେ ରୁଟି ପାଣି ଖାଉଁ
ରୁଟି ପାଣି ଖାଇ ଆମ୍ଭେ ସଦା ଯୁଝୁଥାଉଁ
ଶଉଚ ଅଶଉଚ ସବୁ ଆମ୍ଭ ଚର୍ଯ୍ୟେ
ଯେଉଁ ସ୍ଥାନେ ଯାହା ଦେଖୁଁ ତାହା ଯାଉଁ ଖାଇ ।"

କେବଳ ଏତିକି ନୁହେଁ; ପୁରୁଷୋତ୍ତମଦେବ ଦିଗ୍‌ବିଜୟ କରି ଯେପରି ଭାବରେ କାଞ୍ଚିରାଜାଙ୍କୁ ସକୁଟୁମ୍ବେ ବନ୍ଦୀ କରି, ଗୋପାଳ ମୂର୍ତ୍ତି, ଭଣ୍ଡ ଗଣେଶ ଓ ବହୁ ଦେବୀ ମୂର୍ତ୍ତି ଘେନ ଶ୍ରୀଗୁଣ୍ଡିଚ୍ଚ ପର୍ବ ଏକାଦଶୀ ଦିନ ସ୍ୱରାଜ୍ୟକୁ ପ୍ରତ୍ୟାବର୍ତ୍ତନ କଲେ, ତାହା ହୃଦୟଙ୍ଗମ କରି କେଉଁ ଓଡ଼ିଆର ପ୍ରାଣ ଗୌରବରେ ଅଧୀର ହୋଇ ନ ଉଠେ ??

"ଓଡ଼ିଶା ଗଜପତି କର୍ଣ୍ଣାଟ ଜୟ କରି
ଆଣନ୍ତି ଯେ ଯାହାର ଯେତେକ ଦ୍ରବ୍ୟ ଜୁରି

ସତ୍ୟବାଦୀ ଗୋପାଳ ଦେଉଳ ହସ୍ତ ଦେଇ ।
ଏତେବଦନେ ଜୟ କଲେ ସେ କଥା ଚତୋଇ
ଅତି ଆନନ୍ଦେ ନୃପତି ଓଡ଼ିଶାକୁ ଚଳି
ଭଣ୍ଡ ଗଣପତିଙ୍କି ଯେ ଆଣିଲେ କଣ୍ଟାଳ ।
ଅନେକ ଦେବଦେବୀ, ମୃଗୁନ ଦ୍ରବ୍ୟ କମ
ତଜକ ଜଳାକବାଟି ଅନେକ ଉତ୍ତମ ।
ଅନେକ ଅମୂଲ୍ୟ ଦ୍ରବ୍ୟ ବୁହାଇ ସକଳ
ଭଣ୍ଡ ଗଣପତି ଯେ ଦେବତା ତାହାଙ୍କର ।
ସେ ଯେ ବୋଲଥିଲ ମୁଁ ପାଇବ ଯେବେ ଜିଣି
ତାର ଇଷ୍ଟଦେବଙ୍କୁ ରଖିବ ପଚ୍ଛେ ଆଣି
ଏମନ୍ତ ଚରିତ ଯେ ରଜାଙ୍କ ଶୁଣିଥିଲେ
ଦେଉଳ ପଚ୍ଛେ ଯେ ଗଣପତିଙ୍କି ରଖିଲେ ।''

## ବ୍ରଜନାଥ ବଡ଼ଜେନା—

କବି ବ୍ରଜନାଥ ବଡ଼ଜେନା ଖ୍ରିଷ୍ଟଯୁଗୀୟ ସାହିତ୍ୟରେ ଅନୁପ୍ରାଣିତ ହୋଇ ତାଙ୍କର କାବ୍ୟ ରଚନା କରିଥିଲେ ମଧ୍ୟ କବିଙ୍କର 'ସମର ତରଙ୍ଗ' ଏକ ମୌଳିକ ସୃଷ୍ଟିଭାବରେ ପରିଚୟ ଦିଏ । ଏଠାରେ ସମର ତରଙ୍ଗର ଆଲୋଚନା ପୂର୍ବରୁ ଅମ୍ବିକା-ବିଳାସର ଆଲୋଚନା କଲେ ଅପ୍ରାସଙ୍ଗିକ ହେବ ନାହିଁ ।

('ଅମ୍ବିକାବିଳାସ' କାବ୍ୟଟି ପଣ୍ଡିତ ବାନାମ୍ବର ଆଚାର୍ଯ୍ୟଙ୍କ ମତରେ ତଥା ପଣ୍ଡିତ ସୂର୍ଯ୍ୟନାରାୟଣ ଦାସଙ୍କର ଓଡ଼ିଆ ସାହିତ୍ୟର ଇତିହାସ ୪ର୍ଥ ଭାଗରେ ଭୂତପୂର୍ବ କେନ୍ଦୁଝରାଧୀଶ୍ୱର ପ୍ରତାପ ଶ୍ରୀ ବଳଭଦ୍ର ଭଞ୍ଜଙ୍କ ଦ୍ୱାରା ରଚିତ ବୋଲି ଉଲ୍ଲେଖ ଅଛି । ମାତ୍ର ଶ୍ରୀ

ସୁଧାକର ଘଟନାପୂର୍ଣ୍ଣ ସପ୍ରମାଣ କାବ୍ୟଟି ବ୍ରଜନାଥଙ୍କର କୃତି ବୋଲି ଦର୍ଶାଇଛନ୍ତି । ଏହା ଏକ ବିବାଦୀୟ ମତ । ତେଣୁ କାବ୍ୟ ସମ୍ପର୍କରେ କେବଳ ଆଲୋଚନା କରାଗଲା ।)

ଆଲୋଚ୍ୟ ଅମ୍ବିକାବିଳାସ କାବ୍ୟରେ ସତୀ ସ୍ୱାମୀଙ୍କ ନିନ୍ଦା ସହି ନ ପାରି ଯଜ୍ଞକୁଣ୍ଡରେ ଝାସ ଦେଇଛନ୍ତି । ଶିବ ଏ ସମ୍ବାଦ ପାଇ ଦକ୍ଷଯଜ୍ଞ ନାଶ ପାଇଁ ଆସିଛନ୍ତି । ଶିବଙ୍କ କୋପରୁ ବୀରଭଦ୍ର ନାମକ ଏକ ପୁରୁଷ ଜାତ ହୋଇଛନ୍ତି । ଦକ୍ଷସେନାଙ୍କ ସହ ତାଙ୍କର ଯେଉଁ ଯୁଦ୍ଧ ହୋଇଛି, ସେ ସମ୍ପର୍କରେ ଅମ୍ବିକାବିଳାସରେ ଉଲ୍ଲେଖ ଅଛି—

"ଅଟ୍ଟହାସ କରି ପରକାଶ
ଅବହେଳେ ସେ ସୈନ୍ୟ କଲେ ନାଶ
ଅଗ୍ରେ ଉଗ୍ର ହୋଇ ଯୁଝିବା ପାଇଁ
ଅରହ ତର୍ଜିରେ କୋପିଲେ କେହି ସେ
ଅମ୍ବୁଜ ବନକୁ ଯଥା ଯେ
ଅନାୟାସେ ହସ୍ତୀ ପଶି ଦଳେ ମନ୍ଥି
ସୈନ୍ୟେ ବୀରଭଦ୍ର ତଥା ଯେ ।
ଅସିବରେ ଛିଣ୍ଡିଗଲା କା ଗଳା
ଅଣ୍ଟାଠାରୁ କେହି ଖଣ୍ଡ କେ ହେଲା
ଅସ୍ଥି ଭଞ୍ଜିଲା ଗଦାରେ କାହାର
ଅନ୍ତ କୁନ୍ତରେ ହୋଇଲା ବାହାର ସେ
ଅତି ବରୂପକେ ଦଶେ ଯେ
ଅନାଇଣ ପାଟି ପ୍ରସାରି ତଗଟି
ଜୀବ ତେଜି ଦୂଶ ଦେଶେ ଯେ ।

ଅଧରେ ଦନ୍ତକୁ ନବଚେ ଭଡ଼ି
ଅଛୁ ମଣ୍ଡପଡ଼ି କେ ମୁଖ ମୋଡ଼ି
ଅଳପ କା' ପିଣ୍ଡେ ଅଛୁ ପରାଣ
ଅନୁଭବ କରିବାକୁ କଷଣ ସେ
ଅଧେ ଛୁଡ଼ିଛୁ କା' ବେକୁଁ ଯେ
ଅଧାଚନ୍ଦ୍ର ଶର ବାଜିଣ କାହାର
ମେଲ ହୋଇଗଲା ବୁକୁ ଯେ ।
ଅମ୍ବୁଦ ଘୋର ବରଷଣ ସମ
ଅବନୀ ରକତେ ହେଲା କର୍ଦ୍ଦମ
ଅଚଳ ସମ ମଡ଼ାକୁଦ ପଡ଼ି
ଅସ୍ଥିପଲ ନୋହେ କଳଣା କରି ସେ
ଅପାର ଦୂରରୁ ଆସି ଯେ
ଅଶନ କରନ୍ତି ଶୃଗାଳ କୁକୁର
କାକ ଗୃଧ୍ରମାନ ମିଶି ଯେ ।"

ଉପାଖ୍ୟାନଟି ପୌରାଣିକ ହେଲେ ମଧ୍ୟ ସାରଳା ଦାସ, ବଳରାମ ଦାସଙ୍କ ପରି କବି ଧନୁର୍ବେଦ ସାହାଯ୍ୟରେ ଦିବ୍ୟାସ୍ତ୍ରର ପ୍ରୟୋଗ ଦର୍ଶାଇ ନାହାନ୍ତି । ସ୍ୱାଭାବିକ ସ୍ତରରେ ଗୋଳଯୁଦ୍ଧ ପରି ଅର୍ଥାତ୍ ଉଭୟ ପକ୍ଷ ଭେଟାଭେଟି ହେଲେ ଯେପରି ହଣାକଟା ହୁଅନ୍ତି, ସେହିପରି ଏଥିରେ ତରବାରୀ, କୁନ୍ତ, ଧନୁର୍ବାଣ ପ୍ରୟୋଗ କରାଯାଇଅଛି । (୪ର୍ଥ ଛାନ୍ଦ, ଅମ୍ବିକାବିଳାସ)

**ସମର ତରଙ୍ଗ:—**

ପୂର୍ବରୁ କୁହାଯାଇଛି କବି ବଡ଼ଜେନା ରୀତିଯୁଗୀୟ ଭାବଧାରାରେ ଅନୁପ୍ରାଣିତ ହୋଇ ତାଙ୍କର କାବ୍ୟ ରଚନା କରିଛନ୍ତି ।

ମାତ୍ର 'ସମରତରଙ୍ଗ'ରେ ତାହାର ବ୍ୟତିକ୍ରମ ଦେଖାଦେଉଛି । ବିକ୍ଷୁବ୍ଧ ସାଗରରେ ଯେପରି ତରଙ୍ଗ ପରେ ତରଙ୍ଗ ଆସେ, ସେହିପରି ସମରକୁ ସାଗର ସହିତ ତୁଳନା କରି ଏକ ଦଳ ପରେ ଆସୁଥିବା ଅନ୍ୟ ଦଳ ସୈନ୍ୟମାନଙ୍କୁ ତରଙ୍ଗ ସହିତ ସେ ତୁଳନା କରିଛନ୍ତି । ପ୍ରକୃତରେ ସମରତରଙ୍ଗ ଉତ୍କଳ ସାହିତ୍ୟରେ କେବଳ ସମରକୁ ଉପଜୀବ୍ୟ କରି ରଚିତ ହୋଇଥିବାର ଜଣାଯାଏ । ଉକ୍ତ କାବ୍ୟରେ କବି ପ୍ରତ୍ୟକ୍ଷଦର୍ଶୀ ଭାବରେ ସମରର କୌଶଳ ବର୍ଣ୍ଣନା କରି-ଯାଇଛନ୍ତି । ତେଣୁ ଏଥିରେ ଅଲୌକିକ ଶକ୍ତିର ବ୍ୟବହାର କରା ନ ଯାଇ ବରଂ ମନୁଷ୍ୟ ହୋଇଛି ନିଜ ଭାଗ୍ୟର ନିୟନ୍ତା ଓ ନିର୍ମାତା ।

ତ୍ରିଲୋଚନ ମହେନ୍ଦ୍ର ବାହାଦୁର ଢେଙ୍କାନାଳର ରାଜା । ୧୭୭୨ରୁ ୧୭୯୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ସେ ରାଜତ୍ୱ କରିଥିଲେ । ୧୭୮୧ ସାଲରେ ଏହି ରାଜାଙ୍କ ସହିତ ମରହଟ୍ଟା ସୁବାଦାରଙ୍କର ଯେଉଁ ଯୁଦ୍ଧ ହୋଇଥିଲା, ତାହା 'ସମରତରଙ୍ଗ'ରେ ବର୍ଣ୍ଣିତ ।

ଢେଙ୍କାନାଳ ରାଜା ପେସକସ୍ ନ ଦେବାରୁ ମରହଟ୍ଟା ସୁବାଦାର ରାଜାରାମ ସୈନ୍ୟସାମନ୍ତ ନେଇ ଢେଙ୍କାନାଳ ଆକ୍ରମଣ କଲେ; କିନ୍ତୁ ପରାସ୍ତ ହେଲେ । ରାଜସୈନ୍ୟମାନେ ଗୋଟିଏ ଲୌହ ଧମସ ଓ ଚଡ଼କ କଳ ମରହଟ୍ଟାଙ୍କଠାରୁ ଛଡ଼ାଇ ନେଲେ । ରାଜାରାମ ଲଜ୍ଜିତ ହୋଇ ନାଗପୁରକୁ ସମ୍ବାଦ ପଠାଇଲେ । ଭୋନ୍‌ସଲା ମୁଡ଼ୋଜି ୪୦ ହଜାର ଅଶ୍ୱାରୋହୀ ସୈନ୍ୟଙ୍କ ସହିତ ନିଜର ସପ୍ତଦଶ ବର୍ଷୀୟ ପୁତ୍ର ଚେମଣାବାବୁଙ୍କୁ ପଠାଇଲେ । ମାତ୍ର ଏଥର ମଧ୍ୟ ମରହଟ୍ଟା ସୈନ୍ୟମାନେ ଶୋଚନୀୟ ଭାବରେ ପରାଜିତ ହେଲେ ।

ଅଠରଦିନ ପର୍ଯ୍ୟନ୍ତ ମରହଟ୍ଟାମାନେ ଦୁର୍ଗ ଅବରୋଧ କରିଥିଲେ । ମହେନ୍ଦ୍ର ବାହାଦୂରଙ୍କର ଦଶ ହଜାର ପାଇକ, ଅଠରଶହ ତେଲଙ୍ଗା ଓ ପାଞ୍ଚଶ ନଗା ସୈନ୍ୟ ଥିଲେ । ତାଙ୍କର ଦୁର୍ଗ ଅତ୍ୟୁଚ୍ଚ ପ୍ରାଚୀର ଦ୍ୱାରା ବେଷ୍ଟିତ ଥିଲା । ଦୁର୍ଗ ବାହାରେ ଚଣ୍ଡୀପ୍ରସାଦ, କାଳିକାପ୍ରସାଦ, ମୁଲକମଏଦାନ ପ୍ରଭୃତି ବୃହତ୍ ତୋପମାନ ସଜ୍ଜିତ ହୋଇଥିଲା । ପ୍ରାଚୀର ଆଢ଼ୁଆଳରେ ରହି ଢେଙ୍କାନାଳ ସୈନ୍ୟମାନେ ମରହଟ୍ଟା ସୈନ୍ୟଙ୍କ ପ୍ରଚଣ୍ଡ ଆକ୍ରମଣକୁ ପ୍ରତିହତ କରିପାରିଥିଲେ । ଓଡ଼ିଆ ସୈନ୍ୟମାନଙ୍କ ମଧ୍ୟରେ କିଏ ବାମ ହସ୍ତରେ ଢାଲ, ଦକ୍ଷିଣ ହସ୍ତରେ ଖଣ୍ଡା ଧରିଥିଲା, କିଏ ରଙ୍ଗା ଅଙ୍ଗା ଓ ଲାଲ୍‌ପଗଡ଼ି ପିନ୍ଧି ଘୋଡ଼ା ଛୁଟାଇଥିଲା, କିଏ ତୁର୍କୀ ଘୋଡ଼ା ଉପରେ ବସି ଢାଲ-ବର୍ଚ୍ଛା ଧରିଥିଲା, ଲମ୍ବା ନଶକୁ କାନରେ ଖୋସି ଦେଇଥିଲା । କାହାର ଘୋଡ଼ା ଦୁଇଗୋଡ଼ରେ ଘୁରୁଥିଲା, କିଏ ଦଧି ଏଗପକ୍ଷୀଙ୍କ ପର ବାହୁରେ ପିନ୍ଧିଥିଲା, କିଏ ଗଜରାଜ ଉପରେ ହଉଦ୍ଦା କର୍ଣ୍ଣର ହାଉଦା ପକାଇ ବସିଥିଲା, ଗଳାରୁ ତା'ର ମୋତି ଝାଲର ଲମ୍ବି ଥିଲା ।

"କେ ଅଛୁ କଚ୍ଛି ବାଜୀକି ଚଢ଼ି ଧରି ନେଉଛୁ ଯୋଡ଼କ ଯୋଡ଼
ଈଶାରା କଲେ ମସ୍ତକ ଗୁଡ଼ ଯିବ ସେ ଉଡ଼ି ଯେ
କେହୁ ତୁରୁକ ପିଠିରେ ବସି ଢାଲ ବରଛା ଧରିଛୁ କଷି
କର୍ଣ୍ଣରେ ନଶ ଦେଇଛୁ ଖୋଷି ଲମ୍ବିଛୁ ଦାଢ଼ୀ ଯେ
କେହୁ ସୁଆର ହୋଇ ଇରାଙ୍କିପର ଯେ
ଯେତେ ସମ୍ଭାଳ ନେଲେ ନୋହେ ସେ ସ୍ଥିର ଯେ
ଫୁ ଫୁ ଶବଦ ମୁଖୁଁ କାହାର ବଜୁଳି ପରି ଚରଣ ତାର
ହୁଅନ୍ତେ ଚୂଟ୍‌କାର ପିଠିରେ ଠୁକୁଛୁ କର ଯେ ।"

ଅଗଣିତ ମରହଟ୍ଟା ସୈନ୍ୟମାନେ ଆସୁଥିବା କାଣ୍ଟରେ ପାଣି ପିଇ ପିଇ ଶୁଖାଇଦେଲେ । ଘୋଡ଼ାମାନଙ୍କୁ ଚର ମିଳିଲା ନାହିଁ, ବାଡ଼ରେ ଅନେକ ମଲେ । ତଥାପି ସେମାନେ ବହୁ ଆଡ଼ମ୍ବରରେ ଆସୁଥିଲେ । କବି ଏଠାରେ ମରହଟ୍ଟା ସୈନ୍ୟମାନଙ୍କୁ ସାଗର ସହିତ ତୁଳନା କରି ହସ୍ତୀମାନଙ୍କୁ ମଗର, ଓଟମାନଙ୍କୁ କୁମ୍ଭୀର ଏବଂ ଅଶ୍ୱଙ୍କର ଗତିକୁ ମୀନ ସହିତ ତୁଳନା କରିଛନ୍ତି—

ଦେଖିଲା ଲୋକ ହୋଇ କାତର ବୋଲନ୍ତି ଘୋଟି ଆସେ ସାଗର

"ଲୋକ ଚଳନ୍ତେ କହନ୍ତି ଦେଖ ତରଙ୍ଗପାଣି ଯେ
ଗଜମାନଙ୍କୁ ବୋଲନ୍ତି ଏ ମଗର ଯେ
ଓଟ ନୁହନ୍ତି ଭସୁଛନ୍ତି କୁମ୍ଭୀର ଯେ
ଯେ ଡ଼ବା ଅଶ୍ୱ ଗତକ ଗ୍ଭହିଁ ବୋଲନ୍ତି ମୀନ ଯାଆନ୍ତି ତେଇଁ
ଫେଣ ପରିଏ ମଣନ୍ତି ଚହିଁ ଶ୍ୱେତ ଗ୍ଭମର ଯେ ।"

ମାତ୍ର ମହେନ୍ଦ୍ର ବାହାଦୂର ଏ ସବୁକୁ ଭ୍ରୂକ୍ଷେପ ନ କରି ମନ୍ଦରଗିରି ସଦୃଶ ମରହଟ୍ଟା ସୈନ୍ୟସାଗରକୁ ମନ୍ଥନ କରିଛନ୍ତି ଏବଂ ତାଙ୍କର ସୈନ୍ୟମାନେ ଉଣ୍ଡିବା ଜାଙ୍ଗଲ ବାଟେ ବନ୍ଧୁକ ଦାଗିଛନ୍ତି, ଯାହା ଫଳରେ ପ୍ରାଣଭୟରେ ଜୀବଜନ୍ତୁମାନେ ପଳାୟନ କରିଛନ୍ତି, ବୃକ୍ଷର ଗଣ୍ଡି ଫାଟିଯାଇଛି, ଧୂମରେ ଢେଙ୍କାନାଳର ଅରଣ୍ୟ ଅନ୍ଧକାରମୟ ହୋଇଯାଇଛି । ମଝିରେ ମଝିରେ ରାଜାଙ୍କର ଉତ୍ସାହ ବାକ୍ୟରେ ସୈନ୍ୟମାନେ ଦ୍ୱିଗୁଣ ଉତ୍ସାହରେ ଯୁଦ୍ଧ କରିଛନ୍ତି । ମରହଟ୍ଟା ସୈନ୍ୟମାନେ ଓଡ଼ିଆ ସୈନ୍ୟମାନଙ୍କର ଯୁଦ୍ଧ ଦେଖି ପ୍ରାଣଭୟରେ ଛିନ୍ନଭିନ୍ନ ହୋଇ ପଳାଇ ଯାଇଛନ୍ତି । କବିଙ୍କ ଭାଷାରେ—

"ଏଣେ ମୃତ୍ତିକାର ଢୋଉ ଲାଗନ୍ତେ
ଉଡ଼ିଗଲେ ଫଉଜ ଅବା କେତେ
ଉଡ଼ିଗଲେ ବା କେତେ ଘୋଡ଼ାଘୋଡ଼ୀ
କେତେ ତମ୍ବୁ କବାଟ ନେଲା ଉଡ଼ି
ଗୋଳା ଗୋଟିକେ ଦଶ ବାଂଶ ଯନ୍ତି
ଉଡ଼ିଯାଆନ୍ତି ଭୂକା ପ୍ରାପ୍ତ ହୋଇ ।"

ମାତ୍ର ଓଡ଼ିଆ ସୈନ୍ୟମାନେ ପଛଘୁଞ୍ଚା ନ ଦେଇ ବୀରୋଚିତ ଭାବରେ ମୃତ୍ୟୁବରଣ କରିଛନ୍ତି । ମୃତ୍ୟୁ ପ୍ରତି ସେମାନଙ୍କର ଭୟ ନାହିଁ । ତେଣୁ—

"ଶୁଣି ଗର୍ଜନ କା ହୃଦରୁ, ତେବେ ଡାକୁଛି ଭାଇ ମାର ମାର
ଚୋଟ ବସିଲାକ କାହା ମୁଖରେ, ଖଣ୍ଡାହାତ ସେ ବାନ୍ଧୁଛି ପ୍ରଥରେ
କାହା ଗୋଡ଼ ଭାଙ୍ଗିପଡ଼େ ଧରଣୀ, ଯାଇ ଘୋଷାରି ପଶୁଅଛି ବାଣି
କାହା ଗୁଳିରେ କଙ୍କାଳେ ବାହାରି, ପେଟ ଅବା ଫୁଟିଯାଏ କାହାରି
କେଉଁ ଲୋକର ଚକ୍ଷି ଯାଏ ଫୁଟି, ଭାଙ୍ଗପକାଏ କାହାର ଛ କାଠି
ଯାଇଁ ବାଜଇ କାହାର ଗୁଳିରେ, ଛୁଡ଼ି ବନ୍ଧୁକ ଭାଗେକେ ଅଥିରେ
ଭାଙ୍ଗିପକାଏ କାହା ଜାନୁ ହାଡ଼, ସେ ଯେ ଘୋଷରେ ହୋଇ ନଡ଼ବଡ଼
କାହା ବଦନେ ତେରେଛି ବାଜଲା, ଦନ୍ତ ପାଟିରୁ ଫାଳେ ଝେଣଗଲା
ଥୁ ଥୁ କରି ପକାଏ ସେ ରକତ, କଥା କହିବାକୁ ନୋହେ ଶକତ ।

ମରହଟ୍ଟା ବାହିନୀର ଘୋର ଦୁର୍ଦ୍ଦଶା କବି ଅତି କରୁଣ ଭାବରେ ବର୍ଣ୍ଣନା କରିଛନ୍ତି । ଯୁଦ୍ଧଭୂମିରେ କାହା ଦେହରୁ ଶର ଉପାଡ଼ିବାରୁ ବା ଗୁଳି କାଢ଼ିବାରୁ ସେ ମରିଯାଇଛି । କିଏ ଗାତ ଖୋଳି ନିଜ ଶ୍ୱଶୁରକୁ ପୋତୁଛି । କିଏ ମାମୁଁକୁ ପୋଡ଼ୁଛି । କିଏ

ଆହତ ସୈନିକ ଦେହରୁ ଶର କାଢ଼ି ଘାଆ ସିଲାଇ କରିଦେଉଛନ୍ତି । କବି ପୁଣି ନିଜ ଭାଷାରେ କୃଷ୍ଣ୍ଟମାନଙ୍କ ଗୁଣ ସ୍ମରଣ କରି ବିଳାପ କରୁଛନ୍ତି—

"କୋ ବୋଲଇ ହା ହା ରେ ବେଟା ମେରା
କୈସେ ଗୁନ୍ ବିସୋରୁଁ ମୈଁ ତେରା
କେନ୍ତୁ କାନ୍ଦଇ ହା ହା ମେରି ଖସ୍ମେ
କ୍ୟା ଗୁନାହ ମୁଝକୋ ଛୋଡ଼ିଗସ୍ମେ ।"

କେବଳ ଏତିକି ନୁହେଁ, ଆଧୁନିକ ଯୁଗପରି ସେତେବେଳେ ମଧ୍ୟ ଗରିଲା ଯୁଦ୍ଧ ଥିଲା ଏବଂ ଏହି ଗରିଲା ଯୁଦ୍ଧରେ ଓଡ଼ିଆ ସୈନିକମାନେ ସୁଦକ୍ଷ ଥିଲେ ବୋଲି କବି ବର୍ଣ୍ଣନା କରିଛନ୍ତି । ଉଭୟ ପକ୍ଷର ସୈନ୍ୟମାନେ ଯୁଦ୍ଧରେ ଯେଉଁ ଅସ୍ତ୍ରଶସ୍ତ୍ର ବ୍ୟବହାର କରିଥିଲେ, ତାହାର ମଧ୍ୟ କବି ବର୍ଣ୍ଣନା କରିଛନ୍ତି । ଯଥା :—

କୁନ୍ତ, ଗୁପ୍ତି, ଫାରଶା, ଟାଙ୍ଗି, କଟାରି, ବାଙ୍କଛୁରି, ଛୋରା, ଭାଲ ବା ଭଲି, ସାବେଳ, ବଲମ, ବର୍ଚ୍ଛା, ତରବାରି, ଧୂପ, ଖଡ଼୍ଗ, ହିସକଟ ଗୁଣ୍ଡା, ଜମ୍ବୁରା, ପେଟକଟା ସାତହାତି ବନ୍ଧୁକ, ଚକମକି-ଲଗା ନଳୀ ଇତ୍ୟାଦି ।

ଶେଷରେ ଅଠର ଦିନ ଦୁର୍ଗ ଅବରୋଧ କଲା ପରେ ପରାସ୍ତ ହୋଇ ଚେମଣାବାବୁ ସନ୍ଧିପ୍ରସ୍ତାବ ପଠାଇଲେ—'ଗୋଟିଏ ଦିନ ଲାଗି ଦୁର୍ଗ ଛାଡ଼ି ଚାଲିଯାଅ । ମରହଟ୍ଟାର ମହତ୍ତ୍ୱ ରହୁ ।' ମାତ୍ର ତ୍ରିଲୋଚନ ମହେନ୍ଦ୍ର ବାହାଦୁର ଏଥିରେ ରାଜି ହୋଇ ନାହାନ୍ତି । ଢେଙ୍କାନାଳର ଗରିଲା ବାହିନୀ ଦ୍ୱାରା ପରାଜିତ ମରହଟ୍ଟା ସୈନିକମାନେ ବିକଳବିକଳ ହୋଇଛନ୍ତି । ଏହିପରି ଭାବରେ ଢେଙ୍କାନାଳ ଇତିହାସର ଉଜ୍ଜ୍ୱଳ—ତମ ଅଧ୍ୟାୟଟି ଶେଷ ହୋଇଛି ।

ପ୍ରକୃତରେ କବିଙ୍କର ସମରତରଙ୍ଗ ତତ୍କାଳୀନ ସମଗ୍ର ଭାରତୀୟ ସାହିତ୍ୟରେ ଏକ ଉଜ୍ଜ୍ୱଳ କୃତି କହିଲେ ଅତ୍ୟୁକ୍ତି ହେବ ନାହିଁ । କବି ତାଙ୍କ ବର୍ଣ୍ଣନାରେ ସେ କୌଣସି ଗତାନୁଗତିକ ଧାରାକୁ ଅନୁସରଣ କରି ନାହାନ୍ତି । ଦୁର୍ଗ ସମ୍ପର୍କରେ ତାଙ୍କ ଜ୍ଞାନ ପ୍ରତ୍ୟକ୍ଷ, ସମର କୌଶଳ ଓ କୂଟନୀତିରେ ସେ ବିଶାରଦ । ଅସ୍ତ୍ରଶସ୍ତ୍ର ସଜ୍ଜା, ସୈନିକଙ୍କ ବେଶ ଭୂଷଣ, ପରାଜିତ ସୈନିକଙ୍କ ମନୋବିଜ୍ଞାନ ପ୍ରତ୍ୟକ୍ଷଦର୍ଶୀ ବ୍ୟକ୍ତିତ କିଏ ଏପରି ହୃଦୟଙ୍ଗମ କରିପାରିବ ? ଏସବୁ ସତ୍ତ୍ୱେ ଏଠାରେ ଆଲୋଚନା କଲେ ଅପ୍ରାସଙ୍ଗିକ ହେବ ନାହିଁ ଯେ କବି ଉତ୍କଳୀୟ ସମର ସାହିତ୍ୟରୁ କୌଣସି ପ୍ରେରଣା ପାଇଥିବାର ଜଣାଯାଏ ନାହିଁ ।

ଯାହା ଫଳରେ ଉତ୍କଳର ଐତିହାସିକ ଗୌରବ ଚେତନା, ଅନଙ୍ଗଭୀମ, ନରସିଂହ, କପିଳେନ୍ଦ୍ର ବା ପୁରୁଷୋତ୍ତମଙ୍କର ଦିଗ୍-ବିଜୟର ଚିତ୍ର ତାଙ୍କର ଦୃଷ୍ଟିପଥାରୁଢ଼ ନ ହୋଇ ରାମାୟଣର ଯୁଦ୍ଧ ଚିତ୍ର ତାଙ୍କର ମନେପଡ଼ୁଛି । ତେଣୁ କବି ଲେଖିଛନ୍ତି —

"ପୂର୍ବେ ଲଙ୍କା ଲଢ଼ାଇ ଯା ଗୀତରେ
ଶୁଣୁଥାଇଁ ଏବେ ସେହି ମତରେ
ଗଲା ରକତ ନଦୀ ପ୍ରାୟ ବହି
ଗିରି ପ୍ରାୟ ମଡ଼ା ପଡ଼ି ଦିଶଇ
ଦେଖାଗଲା ନାଚିବାର କବନ୍ଧ
ଥାଉଁ ଥାଉଁ ନୟନ ହେଲା ଅନ୍ଧ ।" (ସମର ତରଂଗ)

## କହ୍ନାଇ ଚମ୍ପତିରାୟ ଚୂଡ଼ାମଣି—

ପାଇକବର କହ୍ନାଇ ଚମ୍ପତିରାୟଙ୍କ ଲିଖିତ 'ପାଇକ ଖେଦା' ଓଡ଼ିଆ ସମର ଇତିହାସରେ ଏକ ଅମୂଲ୍ୟ ଗ୍ରନ୍ଥ । ଲେଖକ ନିଜେ

ପାଇକ ବିଦ୍ୟାରେ ଅଭିଜ୍ଞ ଥିବାରୁ ଅତୀତ ଓଡ଼ିଶାର ସାମରିକ ଐତିହ୍ୟ ବିଷୟ ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରିଛନ୍ତି । ସ୍ୱାଧୀନ ଓଡ଼ିଶାରେ ସୈନିକ କିପରି ବଞ୍ଚୁ ହେଉଥିଲେ, ଯୁଦ୍ଧରେ ଆହତ ସୈନିକମାନେ କି ପ୍ରକାର ଚିକିତ୍ସିତ ହେଉଥିଲେ ଏବଂ ନୌଯୁଦ୍ଧ କିପରି ହେଉଥିଲା, ସେ ବିଷୟରେ ଲେଖକ ସ୍ପଷ୍ଟରୂପେ ସୂଚନା ଦେଇଛନ୍ତି ।

ଆଲୋଚ୍ୟ ପାଇକଖେଦା ପୁସ୍ତକ ଉତ୍କଳୀୟ କାବ୍ୟ, କବିତାର ଛନ୍ଦ ଓ ପଦପାଳି ପ୍ରଭୃତିରୁ ବଞ୍ଚିତ ହୋଇଥିଲେ ମଧ୍ୟ ଅନୁଭୂତ ଶାସ୍ତ୍ର ସମରନୀତି ବିଧାନ ଦିଗରୁ କୌଣସି ଗୁଣରେ ନ୍ୟୂନ ନୁହେଁ । ସମର କୌଶଳ ଓ ସମର ଶିକ୍ଷାର ଏହା ଏକମାତ୍ର ଓଡ଼ିଆ ଗ୍ରନ୍ଥ ବୋଲି କୁହାଯାଇପାରେ । ଏଥିରେ ଯୁଦ୍ଧବିଜ୍ଞାନର ପ୍ରଧାନ ଅଙ୍ଗ ସୈନ୍ୟ ସଂଗ୍ରହ ଅନ୍ୟତମ । କବି ସେ ସମ୍ପର୍କରେ ବିସ୍ତୃତ ଆଲୋଚନା କରି ଲେଖିଛନ୍ତି—

'ଏକପୁତ୍ରୀ ହୋଇଥିଲେ ତାହା ନ ଯୋଗାଇ
ଭାଇ ଥିଲେ ବଡ଼ ଯାଇ ସାନ ଘରେ ରହି
ପିତାମାତା ମରି ଯେବେ ବରଷ ନ ପୂରି
ଥିବ, ଯୋଗ୍ୟ ନୁହେ ବଡ଼ ସାନକୁ ଆବୋରି ।''

ଶୃଙ୍ଖଳା ଯୁଦ୍ଧ ବିଜ୍ଞାନର ସର୍ବଶ୍ରେଷ୍ଠ ବିଷୟ । ସମସ୍ତ ବିଭାଗ, ଉପବିଭାଗ କର୍ମବିଭାଗ ଭେଦରେ କ୍ଷମତାର ହ୍ରାସବୃଦ୍ଧିର ଅବକାଶ ହୋଇଥାଏ । ଚମତ୍କାରିତ୍ୱ ସେସବୁ ବିସ୍ତୃତ ଭାବରେ ଆଲୋଚନା କରିଛନ୍ତି । ଏହାବ୍ୟତୀତ ଜଳଧର ବ୍ୟୂହ, ଅର୍ଦ୍ଧଚନ୍ଦ୍ର ବ୍ୟୂହ, ସୂଚୀ ବ୍ୟୂହ, ଚକ୍ର ବ୍ୟୂହ ଓ ସେନାନାୟକ ବ୍ୟୂହ ପ୍ରଭୃତି କିପରି ରଚନା କରାଯାଏ, କେଉଁ ସ୍ଥାନରେ କାହାର ଅବସ୍ଥାନ ହେବା

ଉଦ୍ଧେସ୍ତୁ, ତାହା ମଧ୍ୟ ସେ ଦର୍ଶାଇଛନ୍ତି । ଖଡ୍‌ଗ କପରି ଗୁଳନା କରାଯିବ, କଉଳ ବେଶ ହେବ; କେଉଁ କେଉଁ ଯୁଦ୍ଧ ଉପକରଣ ରଖାଯିବ, ତାହା ରଖାଯିବାର ତାତ୍ପର୍ଯ୍ୟ ପ୍ରଭୃତି ପୁସ୍ତକଟିରେ ବର୍ଣ୍ଣିତ ହୋଇଛି । ଯୁଦ୍ଧରେ ବ୍ୟବହୃତ ପତାକା ନୁଆଁଇବା ସହଜ କଥା ନୁହେଁ । ସେ ସମ୍ପର୍କରେ କବି ଲେଖିଛନ୍ତି—

"ଏ ବାନା ନୁଆଣ ଖୂଦର ନୁହଇ
ଏହୁ ଗହନରୁ ଗହନ
ଯେବେକ ନୋଇଁବ କରିବେ ସମ୍ଭର
ମନ୍ତ୍ରୀ ଗଜଗୁରୁ ଆଦର ।"

ଗ୍ରନ୍ଥର ଦଶମ ଅଧ୍ୟାୟରେ ବନଦୁର୍ଗ, ବାରିଦୁର୍ଗ ଓ ଗିରିଦୁର୍ଗ ପ୍ରଭୃତିର ବର୍ଣ୍ଣନା ଦିଆଯାଇଛି । ଧନୁଶର କପରି ନିର୍ମାଣ କରିବାକୁ ହେବ, ଧନୁରେ କପରି ଶର ଯୋଜନା କରିବାକୁ ହେବ ଏବଂ ଧନୁର୍ବେଦ କ'ଣ, ସେ ବିଷୟରେ ମଧ୍ୟ କବି ବର୍ଣ୍ଣନା ଦେଇ ଲେଖିଛନ୍ତି—

"ଦମୋନଆ ଶର ଯାଣ ଗୁରୁଟି
ତାଙ୍କୁ ଆମୋଞ୍ଚିବ ଅତି ସ୍ଥିରୁଟି
ପ୍ରତିଶର କାଳରେ ଏହା ଠାଣ
ଏହା ମନ୍ତ୍ରିଣ ବାନ୍ଧିଲେ କମାଣ
ଅର୍ଦ୍ଧଚନ୍ଦ୍ର ସମ ମୁନ ମୁନଆଁ
ଶର ନାମ ତା ମାରନ୍ତି ଧନଆଁ

× × ×

ବାଣ ମନ୍ତ୍ରର ଜାଣ ବଡ଼ ଠାଣ
ମନ୍ତ୍ରୀ ଭେଦିଲେ ଜଣଇ କମାଣ

ମନ୍ତ୍ର ଜାଣରେ ବାଘ ଭୁ ଚେତଣ
ଶମ ଯେ ବାଣ ମାଇଲେ ସ୍ତବଣ
ବାଣ କାଜ ପରଯନ୍ତେ ଟାଣିବୁ
ବାଣ ମୁଖରେ ମନ୍ତ୍ର କହିବୁ ।" ଇତ୍ୟାଦି ।

ସେହିପରି ଖଣ୍ଡାଚାଳନା ସମ୍ପର୍କରେ ଚମ୍ପତିରାୟ ଲେଖିଛନ୍ତି—

"ବୀର ଆସନରେ ଆଣେ ଉହ୍ବଣ
କହି ବୁଲାଇ କରିବଟି ରଣ
ଆଦ୍ୟ ତନ ଚକର ବୁଲାଇବ
ଝଣେ ଅରାତି ତାଙ୍କୁ ଚହିଁବ ।"

ସେ ସମୟରେ ନଳୀବନ୍ଧୁକ, ଦେଶୀ ବା କୁଠା ବନ୍ଧୁକର ପ୍ରଚଳନ ଥିଲା । ଏହାର ଚାଳନା ସମ୍ପର୍କରେ କବି ଲେଖିଛନ୍ତି—

"ରଞ୍ଜାକୁ ଜାଗ୍ରତ ରଖିବ
ଝୁଲକଟାକୁ ଚହିଁଣ ଥିବ
ଶେବ ଦେଇ ରଞ୍ଜାକରୁ ପୁନେ
ଗଣ୍ଡିଆକୁ ଜୁଡବଟି ବନେ ।"

ମୋଟାମୋଟି କହିଲେ ଚମ୍ପତିରାୟ ତତ୍କାଳୀନ ଯୁଦ୍ଧନୀତି ତଥା ବଂଶ ପରଂପରା ଆଚରିତ ସମର ବିଜ୍ଞାନକୁ ପଦ୍ୟ ଆକାରରେ ଯେପରି ଭାବରେ ପ୍ରକାଶ କରିଛନ୍ତି, ତାହା ଜାତି ପକ୍ଷରେ ଗୌରବାବହ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

## ନୃସିଂହ ରାୟଗୁରୁ:—

କବି ନୃସିଂହ ରାୟଗୁରୁଙ୍କର 'ବୁଢ଼ାପକ୍' ଯୁଦ୍ଧପୋଥି ବ୍ରଜନାଥଙ୍କ 'ସମରତରଙ୍ଗ'ର ଅନୁସରଣରେ ବର୍ଣ୍ଣିତ ହୋଇଥିବା

ପର ମନେହୁଏ । ସମରତରଙ୍ଗରେ ଢେଙ୍କାନାଳ ରାଜାଙ୍କ ସହିତ ମରହଟ୍ଟାମାନଙ୍କର ଯୁଦ୍ଧ ହୋଇଥିଲା । ମାତ୍ର ବୁଢ଼ାପଙ୍କ ଯୁଦ୍ଧ-ପୋଥିରେ ଦୁଇ ଗ୍ରାମ ମଧ୍ୟରେ ସୀମାଗତ ବିବାଦ ଯୋଗୁ ବାଡ଼ଆପିଠା ହେବା ପରେ ବୁଢ଼ାପଙ୍କ ଗ୍ରାମ ଲାଗି ଢେଙ୍କାନାଳ ଏବଂ ଅନୁଗୁଳ ମଧ୍ୟରେ ଯୁଦ୍ଧ ହୋଇଛି ।

୧୮୧୪ ଖ୍ରୀଷ୍ଟାବ୍ଦରେ ସୋମନାଥ ସିଂହ ଅନୁଗୁଳର ସିଂହାସନ ଆରୋହଣ କଲେ । ୧୮୫୩ରେ ହଜାରିବାଗ୍ ଜେଲରେ ତାଙ୍କର ମୃତ୍ୟୁ ହେଲା । ସେ ୩୩ ବର୍ଷ ରାଜତ୍ୱ କରିଥିଲେ । ୧୮୨୫ ଖ୍ରୀଷ୍ଟାବ୍ଦରେ ଅନୁଗୁଳ ଏବଂ ଢେଙ୍କାନାଳ ମଧ୍ୟରେ 'ବୁଢ଼ାପଙ୍କ' ଯୁଦ୍ଧ ହୋଇଥିଲା । ଏ ଯୁଦ୍ଧରେ ହିନ୍ଦୋଳ, ଦର୍ପଣୀ, ସୁକିନ୍ଦା, ଆଠଗଡ଼, ବଳରାମପୁର, ଦଶପଲ୍ଲାର ରାଜାମାନେ ଢେଙ୍କାନାଳ ରାଜାଙ୍କୁ ସାହାଯ୍ୟ କରିଥିଲେ । ଅନୁଗୁଳ ସପକ୍ଷରେ କେବଳ ତାଙ୍କ ଶ୍ୱଶୁର ତାଳଚେର ରାଜା ଥିଲେ । ଢେଙ୍କାନାଳ ରାଜା ବୁଢ଼ାପଙ୍କ ଗ୍ରାମରେ ପ୍ରଥମେ ଆକ୍ରମଣ ଆରମ୍ଭ କଲେ ସୁଦ୍ଧା ସୋମନାଥଙ୍କ ପ୍ରଚଣ୍ଡ ପ୍ରତାପ ସମ୍ମୁଖରେ ତିଷ୍ଠି ନ ପାରି ରଣେଭଙ୍ଗ ଦେଇଥିଲେ । ମାତ୍ର ଯୁଦ୍ଧର ପ୍ରଥମ ଭାଗରେ ଆକ୍ରମଣକାରୀ ଢେଙ୍କାନାଳ ବିଜୟୀ ହେବାର ସମ୍ଭାବନା ଦିଶୁଥିଲା । ଯୁଦ୍ଧର ଭୟାବହ ବର୍ଣ୍ଣନା ଅତ୍ୟନ୍ତ ସ୍ୱାଭାବିକ ହୋଇଅଛି—

'ଘୋର ପ୍ରବଳ ସଂଗ୍ରାମ ଗୋଳ
ଅନ୍ଧାର ଦିଶେ ଶୂନ୍ୟମଣ୍ଡଳ
କାହାର କେତେ ଶିର କମଳ ଯାଉଛି ଉଡ଼ି ଯେ
କାହାର ଚୂଟି ଭୂଟି ଛିଡ଼ଇ
କେ କଟିଯାଇ ତଳେ ପଡ଼ଇ
କେ କି ଧରି ଲୁଟଇ ମଧ୍ୟ ଦନ୍ତକୁ ଭିଡ଼ି ଯେ ।''

ଶେଷରେ ସୋମନାଥ ଭ୍ରୂକ୍ଷେପ ନ କରି ଅଶ୍ୱାରୋହୀମାନଙ୍କ ସଙ୍ଗରେ ଆଗକୁ ଯିବାର ଦେଖି ଢେଙ୍କାନାଳ ସୈନ୍ୟମାନେ ତୋପ ଦାଗି ଦେଲେ । ଧୂମମଣ୍ଡଳରେ ଚତୁର୍ଦ୍ଦିଗ ଆଚ୍ଛନ୍ନ ହୋଇଗଲା । ଏହି ଯବନିକାର ଆଡ଼୍ଆଳରେ ଅନୁଗୁଳର ଅଶ୍ୱାରୋହୀ ଓ ତାଙ୍କ ପଛରେ ପଦାତିକ ବାହିନୀ ଆଗେଇ ଚାଲିଲେ ।

'ଯେ ଯେଣେ ପାରିଲା ସେ ମାରିଲା ଖଣ୍ଡା କୁନ୍ତ
ଅଁଲା ପିଅଁଳା ନାଡ଼ୀ ଯେ କାହାର ସରୁ ଅନ୍ତ
କାହାର ମସ୍ତକରେ ବାଜିଲା ଭଲ ମୃନ
ଶିରରୁ ରୁଧିର କାହାର ସେ ଛୁଟିଲା ଜୀବନ

× × ×

ସେହି ଧୂଆଁ କହୁଳେ ଯେ ପଶିଲେ ଅନୁଗୋଳ
ଜାଣି ନ ପାରିଲେ କପଟୀ ଢେଙ୍କାନାଳ
ଅଙ୍ଗ ଛନ୍ଦ ପାଇଣ କଲେକ ଭଲ ମାଡ଼
ଢେଙ୍କାନାଳ ସୈନ୍ୟରେ ପଶିଲା ହଗଡ଼
ଅନୁଗୋଳ ବୀରେ ଯେ ପାଇଲେ ରଣ ଜୟେ
ଆପେ ଯୁଦ୍ଧ କରନ୍ତି ସୋମନାଥ ରାୟେ
ତୋପ ଧ୍ୱଜା ସହିତେ ସକଳ ଗଲେ ଛୁଡ଼ି
କମଳାଙ୍ଗଠାରୁ ରଜା ଅଇଲେ କାହୁଡ଼ି ।"

ସେତେବେଳେ ଅନୁଗୁଳରେ ବାରୁଦ ତିଆରି କାରଖାନା ଥିଲା । ତେଣୁ ଅନୁଗୁଳ ରଜା 'ଶତ୍ରୁଘ୍ନଚଣ୍ଡୀ, କାଳିକାପ୍ରସାଦ ପ୍ରଭୃତି କେତେକ ବଡ଼ ବଡ଼ ତୋପ ସଂଗ୍ରହ କରିଥିଲେ । ତା'ଛଡ଼ା ତାଙ୍କର ଅନେକ ଜଜାଲ, ଜମ୍ବୁରା ଥିଲା ଓ ଶତାଧିକ ଅଶ୍ୱାରୋହୀ ସୈନିକ

ଥିଲେ । ସୈନିକମାନେ ଲୌହଜାଲ ନିର୍ମିତ ଶିରସ୍ତ୍ରାଣ ପରିଧାନ କରୁଥିଲେ । ବନ୍ଧୁକ ସହିତ ଖଣ୍ଡା, ଭଲ୍ଲ, ତରବାରି ବ୍ୟବହୃତ ହେଉଥିଲା ।

ବୁଢ଼ାପଙ୍କ ଯୁଦ୍ଧ ଏକ ସ୍ଥାନୀୟ ଯୁଦ୍ଧ; ମାତ୍ର ଅଳ୍ପ କେତେଘଣ୍ଟା ମଧ୍ୟରେ ଶେଷ ହୋଇଥିଲା । ତଥାପି ସମର ସାହିତ୍ୟରେ ବୁଢ଼ାପଙ୍କ ଯୁଦ୍ଧର ଏକ ସ୍ୱତନ୍ତ୍ର ସ୍ଥାନ ଯେ ରହିଅଛି ଏହା ସ୍ୱୀକାର୍ଯ୍ୟ ।

**ବାସୁଦେବ —**

ଦ୍ୱିଜ ବାସୁଦେବଙ୍କର 'ଭଞ୍ଜବିହାର କାବ୍ୟଟିରେ ରାଜା ସଙ୍ଗରେ ରାଜାର ସମର ହୋଇ ନାହିଁ କିମ୍ବା ବିଦେଶୀ ସହିତ ସ୍ୱଦେଶୀର ସମର ହୋଇନାହିଁ—ଏଥିରେ ହୋଇଛି ରାଜା ସଙ୍ଗରେ ସେହି ରାଜ୍ୟ ଅନ୍ତର୍ଗତ ଜଣେ ସାମାନ୍ୟ ଜମିଦାରର ସମର । ତାହାକୁ ସମର କୁହା ନ ଯାଇ ଗୃହ ବିବାଦ କୁହାଯାଇପାରେ । ଫଳରେ ସୃଷ୍ଟି ହୋଇଛି ବିପୁଳ ହତ୍ୟାକାଣ୍ଡ ଏବଂ ଶିଶୁ ଅବଳାଙ୍କ କରୁଣ ରୋଦନ ଧ୍ୱନି କରାଇବାର ନିଷ୍ଠୁର ଅତ୍ୟାଗ୍ରହ । ୧୮୩୪-୩୫ ମସିହାର କଥା । 'ବ୍ରାହ୍ମଣଘାଟୀ'ରେ ଜମିଦାର ମାଧବ ଦାସ ଗଭର୍ଣ୍ଣର ଜେନେରାଲଙ୍କ ଏଜେଣ୍ଟ ୱିଲ୍‌କିନ ସାହେବଙ୍କ ପରାମର୍ଶ ପାଇ ତଥା ଏକ ସହସ୍ର ସୁସଜ୍ଜିତ ସୈନିକଙ୍କର ସେନାପତି ହୋଇଥିବାରୁ ଉଦ୍ଧତ ହୋଇ ଗ୍ରାମାଞ୍ଚଳରେ ଲୁଣ୍ଠତରାଜ ଆରମ୍ଭ କଲା । ବ୍ରାହ୍ମଣମାନଙ୍କୁ ନିର୍ବିଘ୍ନରେ ହତ୍ୟା କଲା, ଗୋମହିଷ ହରଣ କଲା । ମୟୂରଭଞ୍ଜର ରାଜା ପ୍ରତାପ ଯଦୁନାଥ ଭଞ୍ଜ ତତ୍‌କାଳୀନ ଓଡ଼ିଶାର କମିଶନରଙ୍କ ସାହାଯ୍ୟ ପାଇ ବିଦ୍ରୋହ ଦମନ କଲେ । ମାଧବ ଦାସଙ୍କ ଉଆସରେ ଅଗ୍ନିସଂଯୋଗ କଲେ । ଉପାୟାନ୍ତର ନ ଦେଖି ମାଧବ ଦାସ ରାଜାଙ୍କର ଶରଣ ପଶିଲେ ।

ବ୍ରାହ୍ମଣଘାଟୀ ମୟୂରଭଞ୍ଜରେ ରହିଲା, ମାତ୍ର ଷଡ଼େଇକଳା, ଖରସୁଆଁ, ପୋଡ଼ାହାଟ ପ୍ରଭୃତି ଦ'ଟି ପୀଢ଼ ମୟୂରଭଞ୍ଜରୁ ଅଲଗା ହୋଇଗଲା । ଏହାହିଁ ମୋଟାମୋଟି 'ଭଞ୍ଜବହାର'ର ଘଟଣା ।

## ଆଧୁନିକ ଯୁଗ

### ଫକୀରମୋହନ ସେନାପତି—

ଆଧୁନିକ ଯୁଗର କଥାସମ୍ରାଟ ଫକୀରମୋହନଙ୍କର ଉପନ୍ୟାସ ତଥା ଗଳ୍ପଗୁଡ଼ିକ ସମରକୁ ଉପଜୀବ୍ୟ କରି ରଚିତ ନ ହୋଇଥିଲେ ମଧ୍ୟ ତାଙ୍କର ଏକମାତ୍ର ଐତିହାସିକ ଉପନ୍ୟାସ 'ଲଛମା'ରେ ସିରାଜଉଦ୍ଦୌଲାଙ୍କ ସହିତ ମରହଟ୍ଟା ଫୌଜଦାର ଭାସ୍କର ପଣ୍ଡିତଙ୍କର ହୋଇଥିବା ହଳଦୀପଦା ଯୁଦ୍ଧ ଏବଂ ଫୁଲୱାର ଯୁଦ୍ଧର ସୂଚନା ଦିଆଯାଇଛି । ଏହି ଯୁଦ୍ଧରେ କମାଣ, ତୋପ, ଅସ୍ତ୍ରଶସ୍ତ୍ର ତଥା ଗରିଲା ଯୁଦ୍ଧକୌଶଳର ଆଭାସ ଦିଆଯାଇଛି ।

### ରାଧାନାଥ ରାୟ—

କବିବର ରାଧାନାଥ ପ୍ରକୃତରେ ନୂତନତ୍ୱର ମୂର୍ତ୍ତିମନ୍ତ ପ୍ରତୀକ । ସେ ରଣଭୂମିକୁ ଯାଇପାରି ନ ଥିବାରୁ ବାସ୍ତବ ଯୁଦ୍ଧର ବିଭୀଷିକା ତାଙ୍କର ଦୃଷ୍ଟିପଥାରୂଢ଼ ହୋଇପାରି ନାହିଁ ସତ; ମାତ୍ର କଳ୍ପନା ଚକ୍ଷୁରେ ସେ ଯୁଦ୍ଧର ଯେଉଁ ବିଭୀଷିକା ଦେଖିଛନ୍ତି ଏବଂ ନେପୋଲିଅନଙ୍କ ପରି ସେ ଉଦ୍‌ବୋଧନ ଦ୍ୱାରା ଯେଉଁ ବିପୁଳ ଉତ୍ସାହ ଓ ରଣୋନ୍ମାଦନା ସୃଷ୍ଟି କରିବାର ପ୍ରୟାସ କରିଛନ୍ତି, ତାହା ଅମର୍ଷୀବାଣୀ, ଶିବାଜୀଙ୍କ ଉତ୍ସାହ ବାକ୍ୟରେ ପାଠ କରିବା ପରେ କେଉଁ ଭୀରୁ, କ୍ଳୀବ ହୃଦୟକୁ ବୀର ରସରେ ରସାଣିତ ନ କରିବ ? ଶିବାଜୀଙ୍କ ଉତ୍ସାହ ବାକ୍ୟରେ ସେ ଲେଖିଛନ୍ତି—

"ଉଠ ଉଠ ଆହେ ସମ ଯୋଧାଗଣ
କରେ କରବାଳ ଘେନ ସମରେ
ଦେଖ ଦେଖ ଦୂରେ ଆସୁଛି ଯବନ
ଉଡ଼ୁଛି କେତନ ବାୟୁ ଲହରେ ।୧।
ଆସୁଅଛି ଅଶ୍ୱ ଆସୁଛି ଦ୍ୱିରଦ
ଆସୁଛନ୍ତି ସେନା ଜିଣିବା ଆଶେ
ବାଜେ ରଣଶିଙ୍ଗା ଶୁଭୁଛି ଶବଦ
ମେଦିନୀ ସ୍ତବଧ ହୋଉଛି ତ୍ରାସେ ।୨।
ବଜା ରଣଶିଙ୍ଗା ଆରେ ଶୃଙ୍ଗଧର
ଶତ୍ରୁ ଶିଙ୍ଗା ଶୁଣି କେତେ ସହିବ
ମହାରାଷ୍ଟ୍ର ଶିଙ୍ଗା ? କେବେ ନ ଉତ୍ତର
ମହାରାଷ୍ଟ୍ର ଶୁଣି ଶତ୍ରୁ ଗରବ ?
ଏ ଭାରତଭୂମି ଆମ୍ଭର ଜନନୀ
ପୁଣ୍ୟଭୂମି ନାହିଁ ସର ଏହାର
ଅମୂଲ୍ୟ ଦୁର୍ଲ୍ଲଭ ରତନର ଖଣି
ସବୁ ଦେଶ ମଧ୍ୟେ ଏ ଦେଶ ସାର ।"

ଏଠାରେ ଏତିକ କହିଲେ ଯଥେଷ୍ଟ ହେବ ଯେ, ରାଧାନାଥ ଥିଲେ ପ୍ରକୃତରେ ଜାତୀୟତାବାଦୀ କବି । ତେଣୁ ତାଙ୍କର ଏକମାତ୍ର ପୁସ୍ତକ 'କେଣୀହଢ଼ାର'କୁ ବାଦ ଦେଲେ ଅନ୍ୟାନ୍ୟ ରଚନାବଳୀ ଯଥାଃ—ନନ୍ଦୀକେଶ୍ୱରୀ, ଚିଲିକା, ଯାଜପୁର ଏବଂ ମହାଯାତ୍ରାରେ ତାଙ୍କର ଜାତୀୟ ଭାବର ଉନ୍ମାଦନା ଏବଂ କୀର୍ତ୍ତି ସଚେତନତା ଦେଖାଯାଏ । ପୁରୁଷୋତ୍ତମଙ୍କର 'କାଞ୍ଚିକାବେରୀ' କମ୍ବା ବ୍ରଜନାଥଙ୍କର 'ସମର ତରଙ୍ଗ'ରେ ଏ ଭାବଗତି ଦୃଷ୍ଟିଗୋଚର ହୁଏ ନାହିଁ ।

ବ୍ରଜନାଥ ଶୃଙ୍ଗାର ରସର ବହୁ କାବ୍ୟ ରଚନା କରିଥିବା ସ୍ଥଳେ ଦେଖିବାକୁ ଖଣ୍ଡିଏ ମାତ୍ର ସମର କାବ୍ୟ ରଚନା କରିଛନ୍ତି । ମାତ୍ର ରାଧାନାଥ ଅତୀତର ବୀରତ୍ୱ ଚିତ୍ରଣରେ ସଚେତନ କବି ହୋଇ- ଥିବାରୁ ସେ ଏକାଧିକ ଖଣ୍ଡକାବ୍ୟ ସୃଷ୍ଟି କରି ଯାଇଛନ୍ତି । କାରଣ ନିଜ ଦେଶ ଓ ରାଜ୍ୟର ଅତୀତ ଗୌରବକୁ ଚିହ୍ନାଇବାରେ ଏ ଯୁଗର ବୈଶିଷ୍ଟ୍ୟ ନିହିତ । ତେଣୁ ରାଧାନାଥ ଭାରତକୁ 'ଧରଣୀର କଳ୍ପଲତା' କହିବା ସଙ୍ଗେ ସଙ୍ଗେ ଉତ୍କଳକୁ ତା' ମଧ୍ୟରେ ପ୍ରାକୃତିକ ଦୃଶ୍ୟ, ଧର୍ମ ଓ ବୀରତ୍ୱ ଦୃଷ୍ଟିରୁ ସର୍ବଶ୍ରେଷ୍ଠ ରୂପେ ପ୍ରତିପାଦନ କରିଛନ୍ତି ।

'ନନ୍ଦିକେଶ୍ୱରୀ'ରେ ଚୋଡ଼ଗଙ୍ଗଙ୍କ ସ୍କନ୍ଧାବାର, କାଠଯୋଡ଼ି- ତୀରରେ ସୁବର୍ଣ୍ଣକେଶରୀଙ୍କ ଶିବିର, ତମ୍ବୁ, ଉଡ୍ଡୀନ ପତାକା, ବାଦ୍ୟନାଦ, ସୈନ୍ୟମାନଙ୍କ ଲଢ଼ିବନ୍ଧା ଓ ମଲ୍ଲଯୁଦ୍ଧ, ଆଳି, କନିକା, କୁଜଙ୍ଗ, ଅସ୍ତରଙ୍ଗ, ଅସୁରେଶ୍ୱର, ଚଉଦ୍ୱାର, ବରଜାମଣ୍ଡଳ, ଭଦ୍ରକ, ସୋର, ନୀଳଗିରି, କୋଠରଙ୍ଗ, ପାରିକୁଦ, ଦାଣ୍ଡିମାଳ, ଝଲିକୋଟ ପ୍ରଭୃତି ରାଜାମାନଙ୍କର ଯୁଦ୍ଧରେ ଯୋଗଦାନ ବର୍ଣ୍ଣିତ ହୋଇଅଛି ।

ବାରାଣସୀର ଦୁର୍ଗଦ୍ୱାର ରୁଦ୍ଧ ହୋଇଅଛି । ଉତ୍କଳୀୟ- ସେନା ଚୋଡ଼ଗଙ୍ଗ ବାହିନୀର ସମ୍ମୁଖୀନ ହୋଇପାରି ନାହାନ୍ତି । ଅସମ୍ପୂର୍ଣ୍ଣ ଖଣ୍ଡକାବ୍ୟ 'ପାର୍ବତୀ'ରେ ସେହିପରି ହେମପୁର ରାଜ୍ୟ ସଂଗରେ ଗଙ୍ଗେଶ୍ୱରଙ୍କର ଛ'ମାସ ଧରି ଯୁଦ୍ଧ ହୋଇଥିବା ବିଷୟ ବର୍ଣ୍ଣିତ । ମାତ୍ର 'ମହାଯାତ୍ରା' କବିଙ୍କର ପ୍ରକୃତ ସମରକାବ୍ୟ । ଏହାର ପ୍ରଥମାଂଶ ଯୁଦ୍ଧ ବିରତି, ସଂସାରର ନଶ୍ୱରତା, ପାଣ୍ଡବମାନଙ୍କର ଜୀବନ ବୈରାଗ୍ୟ ଓ ଶୋକୋଚ୍ଛ୍ୱାସ ବର୍ଣ୍ଣନାରେ ଯେପରି ପୂର୍ଣ୍ଣ, ଶେଷ

ଦୁଇ ସର୍ଗ ସେହିପରି ବୀରଙ୍କର ହୁଙ୍କାର, ଅଶ୍ୱହ୍ରେଷା, ବାରଣବୃଂହିତ ଓ ଅସ୍ତ୍ର ଝନତ୍କାରରେ ଝଙ୍କୃତ । ଏହି ଯୁଦ୍ଧବର୍ଣ୍ଣନାରେ କବିଙ୍କର ପ୍ରସ୍ତୁତି ବିପୁଳ । ରାଜାମାନଙ୍କର ଆଡ଼ମ୍ବର ସହକାରେ ଯୁଦ୍ଧରେ ଯୋଗଦାନ, କେଉଁ ବାହିନୀ କେଉଁ ବେଶଭୂଷା ପରିଧାନ କରିଛନ୍ତି, କେଉଁ କେଉଁ ଅସ୍ତ୍ର ଧାରଣ କରିଛନ୍ତି, ଅଶ୍ୱାରୋହୀ, ଗଜାରୋହୀ କିମ୍ବା ପଦାତିକ, କେଉଁ ପ୍ରକାର ରଣରେ ବିଶେଷ ପାରଙ୍ଗମ, ତାହା 'ମହାଯାତ୍ରା'ରେ ବର୍ଣ୍ଣିତ କରିଯାଇଛି ।

୧୧୯୧ରେ ପୃଥ୍ୱୀରାଜଙ୍କ ସହିତ ମହମ୍ମଦଘୋରୀଙ୍କର ପ୍ରଥମ ତିରୋରୀ ଯୁଦ୍ଧ ହୋଇଥିଲା । ଉକ୍ତ ଯୁଦ୍ଧରେ ମହମ୍ମଦଘୋରୀ ପରାସ୍ତ ହୋଇଥିଲେ । ତେଣୁ ୧୧୯୨ରେ ଦ୍ୱିତୀୟ ତିରୋରୀ ଯୁଦ୍ଧ ହେଲା । ପୃଥ୍ୱୀରାଜଙ୍କ ସପକ୍ଷରେ ବଙ୍ଗ, ଉତ୍କଳ, ଆଜମୀର, ଗୁଜରାଟ, ସିନ୍ଧୁ, ରାଜସ୍ଥାନ, ଶୂରସେନ, ମାଳବ ପ୍ରଭୃତିର ରାଜାମାନେ ଯୋଗ-ଦେଇଥିଲେ । ମହମ୍ମଦ ଘୋରୀଙ୍କ ସଙ୍ଗରେ ଜୟଚନ୍ଦ୍ର ଓ ତାଙ୍କର କେତେକ ମିତ୍ର ରାଜା ଯୋଗ ଦେଇଥିଲେ । ପୃଥ୍ୱୀରାଜଙ୍କ ସେନାପତି ଥିଲେ—ଆଜମୀର ପତି ଅମର୍ଷୀ । ଦ୍ୱିତୀୟ ତିରୋରୀ ଯୁଦ୍ଧରେ ପୃଥ୍ୱୀ-ରାଜଙ୍କର ସପକ୍ଷରେ ଥିବା ସୈନ୍ୟମାନଙ୍କର ଖ୍ୟାତି ଏବଂ ନୀରବଶ ହୃଦୟର ପରିଚୟ ପାଇ ସେନାପତି ଅମର୍ଷୀ ଯେଉଁ ଅଗ୍ନିଗର୍ଭ ବାଣୀ ଶୁଣାଇଛନ୍ତି, ତାହା ସୈନିକମାନଙ୍କ ପ୍ରାଣରେ ବୀରତ୍ୱର ସ୍ପନ୍ଦନ ସୃଷ୍ଟି କରିଛି । ଫଳରେ ସୈନ୍ୟମାନେ ଦ୍ୱିଗୁଣ ଉତ୍ସାହରେ ସଂଗ୍ରାମ କରି ବିପକ୍ଷକୁ ପରାସ୍ତ କରିବାକୁ ସମର୍ଥ ହୋଇଛନ୍ତି । ଅମର୍ଷୀଙ୍କ ତୁଣ୍ଡରେ କବି କୁହାଇଛନ୍ତି—

"ଏହି କି ସେ ଆର୍ଯ୍ୟଭୂମି ? ଏ ଭୂମିର ସୁତ
ଭୁମ୍ନେ ଟିକି ଆର୍ଯ୍ୟ ନାମ ଦାସ୍ୟାଦ ଜଗତେ ?

ବନା ଯୁଦ୍ଧେ ନ ଦେବାର ସୂଚ୍ୟଗ୍ର ମେଦିନୀ
ପଣ ଯେଉଁ ଆର୍ଯ୍ୟଙ୍କର; ତାଙ୍କର ଶୋଣିତ
ବହେଟିକ ଆଜେ ଯୋଧେ ଭୂମି ଧମନୀରେ ।
ଧିକ ! ଧିକ ! ଶତ ଧିକ ! ଧିକ ଏ ମନ୍ତ୍ରଣା
ଏ ହୀନ ମନ୍ତ୍ରଣା ଭୀରୁ—ପାମର ଉଚିତ
ଉଚ୍ଚାର ଯା କଲ ଶୂରେ ଅପବିତ୍ର ଆଜ
ନିଜ ମୁଖ, ଶ୍ରୋତାକର୍ଣ୍ଣ ଆର୍ଯ୍ୟବଂଶଧରେ
ଅବା ଅଭାଜନ ଭୂମ୍ଭେ ଏ ନାମ ଧାରଣେ ?
ଭୀରୁତା ଯେ ସେତ୍ର ପିନା ବୀରର ମରଣେ ।

ସମର ପ୍ରାଙ୍ଗଣରେ ଯୁଧପତ୍ର ହର୍ଷ ବିଷାଦର ଚିତ୍ର ଅଙ୍କନ ଅଭିନବ । ଏ ମୁହୂର୍ତ୍ତର ବିଜୟୀକୁ ପର ମୁହୂର୍ତ୍ତରେ ପରାଜୟ ଓ ମୃତ୍ୟୁବରଣ କରିବାକୁ ପଡ଼ୁଛି । ଶିଙ୍ଗା, ଦାମାମା, ଦୁନ୍ଦୁଭି ପ୍ରଭୃତି ରଣବାଦ୍ୟର ଗର୍ଜନ ମଧ୍ୟରେ ଘୋର ରଣୋନ୍ମାଦନା, ନିଷ୍ଠୁର ହନନ, କବନ୍ଧର ନୃତ୍ୟ, ରକ୍ତ, ମେଦ ଓ ଧୂଳିର ବିଭତ୍ସ ମିଶ୍ରଣର ଚିତ୍ର ଅତି ଭୟଙ୍କର ହୋଇଅଛି ।

ଯୁଦ୍ଧଭୂମିରେ ବୀରମାନଙ୍କର ବାକ୍‌ବିଭୂଷା ନିତାନ୍ତ ଅସଙ୍ଗତ ହୋଇଥିବାରୁ କବି ତାହା ପରିହାର କରି ଯୁଦ୍ଧର ଗୁରୁଗାମ୍ଭୀର୍ଯ୍ୟ ଆମୂଳାନ୍ତ ସଂରକ୍ଷଣ କରିଛନ୍ତି । ଯୁଦ୍ଧଯାତ୍ରା କାଳରେ ଜନନୀ, ଭଗିନୀ ଓ ପ୍ରେୟସୀ ପ୍ରଭୃତି ଆତ୍ମୀୟଙ୍କ ମନର ଭାବ ଅଙ୍କନ ପ୍ରୟାସ କବିଙ୍କର ଏକ ନୂତନ ବିଭବ । ଅଶ୍ରୁବର୍ଷଣ ଅଶୁଭ ଲକ୍ଷଣ; ତଥାପି ସ୍ୱଦେଶ ନିମିତ୍ତ ସଂଗ୍ରାମ କରିବାଲାଗି ବୀର ଜନନୀ ପୁତ୍ରକୁ ବିଦାୟ ଦେବାବେଳେ, ସ୍ତ୍ରୀ ସ୍ୱାମୀକୁ ବିଦାୟ ଦେବାବେଳେ ତାହା ରୋଧ କରି ନାହାନ୍ତି । କଠୋର କର୍ତ୍ତବ୍ୟ ଓ ନିବିଡ଼ ସ୍ନେହପ୍ରୀତି

ମଧ୍ୟରେ କବି ସୁନ୍ଦର ଭାବରେ ହୃଦୟର ସଙ୍ଘର୍ଷ ସୃଷ୍ଟି କରାଇ ପାରିଛନ୍ତି । କବିଙ୍କ ଭାଷାରେ—

"ଧନଞ୍ଜୟ ବାହୁବଳ ଯା'ର ରଣଲକ୍ଷ୍ମୀ ପଦେ
କରଷିଲେ ନତାଞ୍ଜଳି ଯାଜ୍ଞସେନୀ ବରାଙ୍ଗନା
ଦୂରୁ ଦେଖି ମୁହୁର୍ମୁହୁ ଶିରେ କର ହାଣି
କାନ୍ଦିଲା କରୁଣେ ତୋଷି ଦାରୁଣ ବଧିକ
ଅତୃପ୍ତ ନୟନେ ଯାଜ୍ଞସେନୀ ଉଦ୍ଧ୍ୱ ପ୍ରଣୟିନୀ
କ୍ୟାକର୍ଣ୍ଣିତ ପ୍ରିୟ ମୁଖ ଦେଖିବାର ଆଶେ
ଥରେ ହେଲେ, ଆମରଣ ସ୍ମୃତିର ସଙ୍ଗୀନ ।"

## ଗଙ୍ଗାଧର ମେହେର:—

ଗଙ୍ଗାଧର ମେହେରଙ୍କର ଖଣ୍ଡକାବ୍ୟ 'ଇନ୍ଦୁମତୀ'ରେ ସମରର ବର୍ଣ୍ଣନା ଦେଖିବାକୁ ମିଳେ । ଏହି ସମରରେ ପୌରାଣିକ ସମର ବର୍ଣ୍ଣନା ପରି ଶର ଏବଂ ଧନୁର ବ୍ୟବହାର ତଥା ଯୁଦ୍ଧ-କ୍ଷେତ୍ରରେ କବନ୍ଧ ନୃତ୍ୟ ଆଦିର ବର୍ଣ୍ଣନା ଦେଖିବାକୁ ମିଳେ ।

ବିଦର୍ଭ ରାଜକନ୍ୟା ଇନ୍ଦୁମତୀଙ୍କର ସ୍ୱୟଂବର ହୋଇଛି । ତେଣୁ ପ୍ରତ୍ୟେକ ଦେଶରୁ ନରପତିମାନଙ୍କ ସହିତ ରଘୁଙ୍କର ପୁତ୍ର ଅଜ ସ୍ୱୟଂବର ସଭାରେ ଯୋଗ ଦେଇଛନ୍ତି । ଇନ୍ଦୁମତୀ ଅଜଙ୍କୁ ପତି ରୂପରେ ବରଣ କରିଛନ୍ତି । ଫଳରେ ଅନ୍ୟ ନରପତିମାନେ ଈର୍ଷାପରବଶ ହୋଇ ପଥ ମଧ୍ୟରେ ଅଜଙ୍କ ସହିତ ଯୁଦ୍ଧ କରିଛନ୍ତି । ଅଜ ନିଜର ପ୍ରିୟତମା ପତ୍ନୀଙ୍କୁ ରକ୍ଷା କରିବାଲାଗି ଅମାତ୍ୟଙ୍କ ଉପରେ ଦାୟିତ୍ୱ ଦେଇ ସଂଗ୍ରାମ କରିବାଲାଗି ଯାଇଛନ୍ତି ଏବଂ ଗତାନୁଗତିକ ଭାବରେ ନିଜର ସୈନ୍ୟମାନଙ୍କୁ ଉଦ୍‌ବୋଧନ ଦେଇ କହିଛନ୍ତି—

"ସଂଗ୍ରାମରେ ନାଶ ହେଲେ ସ୍ୱର୍ଗବାସ
ଜିତିଲେ ଭୋଗ ସମ୍ପତ୍ତି
ପଶ୍ଚାତ୍‌ପଦ ହେଲେ ଅପଯଶ ଲଭି
ସହଜେ ନରକ ଗତି ।
କହୁଁ କହୁଁ ବେନି ଦଳେ ଲଗିଗଲା
ଅତି ଭୟଂକର ରଣ
ରଥୀ ସଙ୍ଗେ ରଥୀ ପଦାତି ପଦାତି
ଅଧୋରଣେ ଆଧୋରଣ ।
ସାଦି ବର ସଂଗେ ସାଦିଏ ଯୁଝିଲେ
କରେ ଧରି କରବାଳ
ସମରକ୍ଷେତ୍ରକୁ ତିମିରେ ଆବୃତ
କରିଦେଲେ ଶରମାଳ ।
ଯୋଦ୍ଧୃଗଣ ଚିହ୍ନି ଆତ୍ମପରଦଳ
ବାରିତ ପାରିଲେ ନାହିଁ
ଆପେ ଆପଣାର ଦଳ ସଂଗେ ରଣ-
ରଙ୍ଗେ ମାତିଗଲେ କାହିଁ ।
ନୃପଗଣ ସଂଗେ ଯୁଝିଲେ ନିଃଶଙ୍କେ
ଏକା ଅଜ ମହାବଳୀ
ଦନ୍ତାବଳ ପୃଷ୍ଠେ କେଶରୀ ପରାୟେ
ଭୟ ଦେଉଥାନ୍ତି ଦଳି ।
କ୍ଷଣେ ଧନୁଷ୍କର କ୍ଷଣେ ଖଡ୍‌ଗପାଣି
କ୍ଷଣେ କ୍ଷଣେ ଧରି ଗଦା
ପ୍ରହାର ଘାତରେ ରିପୁ କାନନକୁ
କରି ଦେଉଥାନ୍ତି ପଦା ।"

ଶେଷରେ ଅଜ ଅଲୌକିକ ପ୍ରସ୍ଥାପନ ବାଣ ପ୍ରୟୋଗ କରି ବିପକ୍ଷ ଦଳକୁ ନିଦ୍ରାଭିଭୂତ କରାଇ ନିଜ ରାଜ୍ୟକୁ ଯାଉଛନ୍ତି । ଏହା ସତ୍ତ୍ୱେ ମଧ୍ୟ କବିଙ୍କର ବର୍ଣ୍ଣନାରେ ସ୍ଥାନେ ସ୍ଥାନେ ଜାତୀୟ ପ୍ରୀତିର ସଙ୍କେତ ମିଳେ । ଯଥା:—

"କ୍ଷତ୍ରିକୁଳେ ଜନ୍ମି କାପୁରୁଷ ପଣେ
ଗାଇଲେ ଜୀବତ ଯେବେ
ଜଡ଼ ଭବେ ଆଉ ଜୀବନ୍ମୃତ ବୋଲି
କାହାକୁ କହନ୍ତୁ ତେବେ ?"

ଏସବୁ ଆଲୋଚନାରୁ ସ୍ପଷ୍ଟରୂପେ ପ୍ରତିଭାତ ହୁଏ ଯେ ଗଙ୍ଗାଧର ଥିଲେ ରାଧାନାଥ ତଥା ସ୍ୱବର୍ଣ ସାହିତ୍ୟର ଯୋଗସୂତ୍ରଧାରୀ ।

## ଗୋଦାବରୀଶ ମିଶ୍ର:—

ସତ୍ୟବାଦୀର ପଞ୍ଚସଖା ସାହିତ୍ୟଗୋଷ୍ଠୀ ଉଗ୍ର ଜାତୀୟବାଦୀ ଥିଲେ । ତେଣୁ ସେମାନଙ୍କର ରଚନାର ଛତ୍ରେ ଛତ୍ରେ ଜାତୀୟତାର ସ୍ୱାକ୍ଷର ଦେଖିବାକୁ ମିଳେ । ସେମାନେ ରାଧାନାଥଙ୍କ ପରି ନୂତନତ୍ୱ ସୃଷ୍ଟି କରି ନ ଥିଲେ ମଧ୍ୟ ଏ ଦେଶର ଅତୀତ ଐତିହ୍ୟକୁ ନେଇ ସେମାନଙ୍କର ରଚନାସୌଧ ଗଠନରେ ବ୍ରତୀ ହୋଇଛନ୍ତି । ସମର ସାହିତ୍ୟ ଆଲୋଚନା ପ୍ରସଙ୍ଗରେ ପଞ୍ଚସଖା ସାହିତ୍ୟଗୋଷ୍ଠୀ ମଧ୍ୟରେ ପଣ୍ଡିତ ଗୋଦାବରୀଶ ମିଶ୍ର ଆମର ଦୃଷ୍ଟିପଥାରୂଢ଼ ହୁଅନ୍ତି । କବିଙ୍କର ଐତିହାସିକ ନାଟକ ପୁରୁଷୋତ୍ତମ ଦେବ, ମୁକୁନ୍ଦଦେବ ଓ ଆଲେଖିକାର ଦୁଃଖିଧନ ଏବଂ କଳାପାହାଡ଼ରେ ଯୁଦ୍ଧ ସମ୍ପର୍କରେ ବର୍ଣ୍ଣନା କରାଯାଇଛି । ସମର ସାହିତ୍ୟ ହିସାବରେ ଏହାର ମୂଲ୍ୟ ଯାହା ଥାଉନା କାହିଁକି, ପଣ୍ଡିତ ମିଶ୍ରଙ୍କର ପଦଲାଳିତ୍ୟ, ଶବ୍ଦ-

ଯୋଜନା ଓ ଭାଷାର ସରଳତା ଯେ କୌଣସି ପାଠକକୁ ମୁଗ୍ଧ କରିଥାଏ ।

ପୁରୁଷୋତ୍ତମ ଦେବ ନାଟକ ବିଷୟରେ ପୂର୍ବରୁ ସୂଚନା ଦିଆଯାଇଛି । ତେଣୁ ଏ ସମ୍ପର୍କରେ ଆଲୋଚନା ନିଷ୍ପ୍ରୟୋଜନ । ସେହିପରି ମୁକୁନ୍ଦଦେବ ନାଟକରେ କଳାପାହାଡ଼ର ଓଡ଼ିଶା ଆକ୍ରମଣ, ଦେବଦେବୀ ଲୁଣ୍ଠନ, ଓଡ଼ିଶାର ଶେଷ ଗଜପତି ମୁକୁନ୍ଦଦେବଙ୍କ ପ୍ରତି ରାମଚନ୍ଦ୍ରଦେବଙ୍କର ବିଶ୍ୱାସଘାତକତା ଫଳରେ ନିହତ ଇତ୍ୟାଦି ··ବର୍ଣ୍ଣିତ । ମୋ୍ଟ ଉପରେ ଏ ଦୁଇଟି ନାଟକରେ ସମର ଗୌଣ ହୋଇ ଜାତୀୟ ପ୍ରୀତିହିଁ ଅଧିକ ଭାବରେ ପରିସ୍ଫୁଟ ହୋଇଛି । ଉଦାହରଣ ସ୍ୱରୂପ, କଳାପାହାଡ଼ କବିତାରେ ମୁକୁନ୍ଦ-ଦେବଙ୍କ ମୃତ୍ୟୁ ପରେ କବି ଲେଖିଛନ୍ତି—

ଆଜ ଏହିଠାରେ ଜନମଭୂଇଁର
ବୁଡ଼ିଲା ବଡ଼ିମା ପଣ
ଆଉ ଗଜପତି ଏ ଦେଶ ଗାଦିରେ
ବସିବେ ନାହିଁଟି ଜାଣ ।

× × ×

ସେ ଦିନୁ ନାହାନ୍ତି ଏ ଦେଶ ଗାଦିରେ
ବସି ଆଉ ଗଜପତି
ଝଣ୍ଡାପୁତେ ଗଣ୍ଡା ଫୋପାଡ଼ିଦେଇ ଲୋ
ଧରନ୍ତି ଲଙ୍ଗଳ କଣ୍ଠି
ଦଶହଜାର ପର୍ବେ ବରଷଂକ ଦିନେ
ଯେଉଁ ହାତ ହତିଆର
ଅଭ୍ୟାସୁଁ ଖେଳନ୍ତି; ପୂର୍ବ ବୈଭବ ଲୋ
ସାମାନ୍ୟେ ନାହିଁ ଛୁକାର ।"

'ଦୁଃଖିଧନ' କବିତାଟି କବିଙ୍କର ଆଲେଖିକା ପୁସ୍ତକରେ ସନ୍ନିବେଶିତ । ଉକ୍ତ କବିତାରେ ତତ୍କାଳୀନ ଓଡ଼ିଆ ରମଣୀମାନେ କିପରି ବୀରାଙ୍ଗନା ଥିଲେ ଏବଂ ଯୁଦ୍ଧକୁ ଭୟ ନ କରି ସ୍ୱାମୀ ଓ ପୁତ୍ରମାନଙ୍କୁ ରଣସାଜରେ ସଜାଇ ରଣଭୂମିକୁ ପଠାଉଥିଲେ, ତାହା ଦୁଃଖିଧନକୁ ଯୁଦ୍ଧଭୂମିକୁ ପଠାଇଥିବା ତାଙ୍କର ମାଆଙ୍କ ଚରିତ୍ରରେ କବି ବର୍ଣ୍ଣନା କରିଛନ୍ତି—

"ଗିରସ୍ତଙ୍କ ଯୁଝ ସଜ କାଢ଼ି ଯତ୍ନେ
ପୁଅକୁ ଦେଲେ ପିନ୍ଧାଇ
ତାଙ୍କର ଖେଳିଲ ଖଣ୍ଡା ଫାରସା ଲୋ
ଦେଲେ ପୁଅ ପାଖେ ଥୋଇ

ଆସିଥିଲେ ଯେବେ ପଣ୍ଡିଲ ପାଳି ସେ
ଥିଲେ ଆଣି ଧନୁଶର
ସେହି ଧନୁ ଏବେ ଶର ସଙ୍ଗତେ ଲୋ
ଦେଲେ କାଢ଼ି ପୁଅ କର

ବନଦୁର୍ଗାଙ୍କୁ ମା' ଜୁହାରିଲେ ଯାଇ
ସେ କୁଳ ଇଷ୍ଟଦେବତା
କହିଲେ ପୁଅକୁ, 'ଜୁହାର, ବାବୁରେ'
ପୁଅ କଲା ପ୍ରଣିପାତ ।

ଆଣି ଆଣ୍ଠୁମାଳ ପୁଅ ବେକେ ମାଆ
ପିନ୍ଧାଇଦେଲେକ ତହୁଁ
କପାଳେ ଆଙ୍କିଲେ ସିନ୍ଦୂର ଫୋଟି ଲୋ
ଜଳି ଦିଶେ ଦାଉ ଦାଉ ।"

ସୁନାଗଡ଼ ରାଜ୍ୟର ଦଳେଇଙ୍କ ପୁତ୍ର ଦୁଃଖିଧନ । ପିଲାଟିବେଳୁ ସେ ବାପଛେଉଣ୍ଡ । ତେଣୁ ମାଆଙ୍କର ଏକମାତ୍ର ନୟନର ତାରା, ଗଳାର ମାଳା । ରଣପୁର ରାଜା ଯେତେବେଳେ ସୁନାଗଡ଼ ଆକ୍ରମଣ କରିଛନ୍ତି; ସେତେବେଳେ ଦୁଃଖିଧନ ନିଜର ରାଜ୍ୟର ମାନ ରକ୍ଷା କରିବା ଲାଗି ଯୁଦ୍ଧକୁ ଡେଇଁ ପଡ଼ିଛି । ମାଆ ତାକୁ ବିଦାୟ ଦେଇଛନ୍ତି । ଦୁଃଖିଧନର ଆଶ୍ଚର୍ଯ୍ୟ ରଣ କୌଶଳରେ ରଣପୁର ରାଜା ପରାଭୂତ ହୋଇଛନ୍ତି । ଶେଷରେ ସେହି ଚତୁର୍ଦ୍ଦଶ ବର୍ଷର ବାଳକ ଦୁଃଖିଧନକୁ ନିହତ କରିବା ଲାଗି ରାଜା ନିଜେ ସୈନ୍ୟ-ସାମନ୍ତ ସହ ଆଗେଇ ଯାଇଛନ୍ତି । ଏକମାତ୍ର ଦୁଃଖିଧନ ସାଗର ସଦୃଶ ସୈନ୍ୟମାନଙ୍କ ସଙ୍ଗରେ ବେଶି ସମୟ ଯୁଦ୍ଧ କରି ନ ପାରି ପ୍ରାଣ ଦେଇଛି ସତ; ମାତ୍ର ସେ ନିଜର ଜନ୍ମଭୂମିକୁ ବଇରୀ ହାତରେ ଟେକିଦେଇ ନାହିଁ । ଯୁଦ୍ଧର ବିଭୀଷିକା ସମ୍ପର୍କରେ କବି ବର୍ଣ୍ଣନା କରିଛନ୍ତି—

''ଶହ ଶହ କେତେ ପଡ଼ିଲା ବଇରି
ମୁଣ୍ଡ ଛିଡ଼ି ଭୂଇଁ ତଳେ
ଡର ଭୟେ ଥୋକେ ପଶିଲେ ଯାଇ ଲୋ
ବଣ ପରବତ ଖୋଲେ ।

ସତୁରି ଶହୁଁ ସେ ରହିଲେ ସାତ'ଶ
ଧନୁଶର ଧରି ଜଣ
ଭିଡ଼ି କାନ ପାଖେ ବିନ୍ଧନ୍ତି କାଣ୍ଡ ଲୋ
କି ତାଙ୍କ କହିବି ପ୍ରଶଂସା ।

ଡାକ ପିଇଁ ପିଇଁ ସେ କାଣ୍ଡମାନ ତ
ବାଜେ ମହାକୋପେ ଯାଇ

ସୁନାଗଡ଼ ଥାନ୍ତି ଜଣକୁ ଜଣ ଲୋ
ଭୂଇଁରେ ପଡ଼ନ୍ତ ଶୋଇ ।"

## ମହାରାଜ ସାର ଶ୍ରୀ ବୀରମିତ୍ରୋଦୟ ସିଂହଦେବ—

ସ୍ୱର୍ଣ୍ଣପୁରଧୀଶ୍ୱର ମହାରାଜ ସାର ଶ୍ରୀ ବୀରମିତ୍ରୋଦୟ ସିଂହଦେବ ୧୯୨୯ ମସିହାରେ ସଂସ୍କୃତ କାବ୍ୟ ଅନୁସରଣରେ 'କାଳିକା' ପୁରାଣକୁ ଓଡ଼ିଆ ଭାଷାରେ ଲେଖିଛନ୍ତି । ଏହା ଲେଖକଙ୍କର ମୌଳିକ ରଚନା ହୋଇ ନ ଥିବାରୁ ଗତାନୁଗତିକ ଯୁଦ୍ଧର ବର୍ଣ୍ଣନା କରାଯାଇଛି ।

ଖାଣ୍ଡବ ନଗରର ରାଜା ସୁଦର୍ଶନଙ୍କ ସହିତ ବାରଣାସୀର ରାଜା ବିଜୟଙ୍କ ଯୁଦ୍ଧ ସମ୍ପର୍କରେ ସୈନ୍ୟ ସଜ୍ଜାର ବର୍ଣ୍ଣନା କରି ଶ୍ରୀ ସିଂହଦେବ ଲେଖିଛନ୍ତି—

"ଆଦେଶକୁ ପାଇ ଯେତେ ଚତୁରଙ୍ଗ ଦଳ
ଦ୍ରୁତଗତି କଳରବେ ସାଜିଲେ ସକଳ ।
ଅଶ୍ୱସାଜ ତହିଁ ପରେ ଆରୋହୀ ବସିଲେ
କରେ କରବାଳ ଘେନି ପଦାତି ଗମିଲେ ।
ସାଜିଲେ ଯେତେକ ସେନା କେ କରେ ଗଣନ
ହସ୍ତୀ ଉପରେ ବସିଲେ ଗଜଯୋଧିଗଣ
ଘନ ଘନ ସିଂହନାଦ ଛାଡ଼ିଲେ ହୁଙ୍କାର
ଭୟଙ୍କର ରବ ଶୁଣି କର୍ଣ୍ଣ ହେଲା ଭାର ।"

ଏଥିରେ ଚତୁରଙ୍ଗ ସେନା ଯଥା:—ରଥାରୋହୀ, ଗଜାରୋହୀ, ଅଶ୍ୱାରୋହୀ ଓ ପଦାତିକ ସେନାଙ୍କର ଯୁଦ୍ଧଯାତ୍ରା ବିଷୟ ବର୍ଣ୍ଣିତ ହୋଇଛି । ରଣବାଦ୍ୟ, କବଚ, ଶିରସ୍ତ୍ରାଣ, ଗଦା, ଶୂଳ, ପଟ୍ଟିଶ,

ତୋମର, ମୂଷଳ ଓ ଧନୁର୍ବାଣ ସାହାଯ୍ୟରେ ଯୁଦ୍ଧ ହୋଇଛି । ଏଥିରେ ପୌରାଣିକ ଯୁଦ୍ଧର ସ୍ମୃତି ଅନୁସାରେ ମଧ୍ୟ ସେ ମନ୍ତ୍ରପୂତ ଶର ପ୍ରୟୋଗର ଉଦାହରଣ ଦେଇଛନ୍ତି ।

## ମୁରଲୀଧର ମଲ୍ଲିକ:—

୨ୟ ବିଶ୍ୱଯୁଦ୍ଧ ପରେ ପରେ ସମର ସାହିତ୍ୟ ଉପରେ ଯେଉଁମାନେ ଲେଖନୀ ଚାଳନା କରିଛନ୍ତି, ସେମାନଙ୍କ ମଧ୍ୟରେ ଶ୍ରୀ ମୁରଲୀଧର ମଲ୍ଲିକ ଅନ୍ୟତମ । ଭାରତୀୟ ସ୍ୱାଧୀନତା ସଂଗ୍ରାମର ବିଭିନ୍ନ ପୃଷ୍ଠଭୂମି ଉପରେ ରଚିତ ତାଙ୍କର 'ଇତିହାସରୁ ପୃଷ୍ଠାଏ' ପୁସ୍ତକ ବ୍ୟତୀତ ୬ଟିରୁ ଊର୍ଦ୍ଧ୍ୱ ଐତିହାସିକ ଉପନ୍ୟାସ ପ୍ରକାଶ ପାଇଛି । ମଧ୍ୟଯୁଗୀୟ ଯୁଦ୍ଧ, ବର୍ତ୍ତମାନର ବିଜ୍ଞାନ ଯୁଗର ଯୁଦ୍ଧ, ଜଙ୍ଗଲ ଯୁଦ୍ଧ, ଯୁଦ୍ଧ ପାଇଁ ପ୍ରେରଣା ଓ ସୈନ୍ୟସଜ୍ଜା ସଂପର୍କରେ ସେ ବିଭିନ୍ନ ପୁସ୍ତକରେ ଆଲୋଚନା କରିଛନ୍ତି । ତାଙ୍କର 'ମଙ୍ଗଳେ ଅଇଲା ଉଷା' ପୁସ୍ତକରେ ସେ ଖାରବେଳଙ୍କର ପାଣ୍ଡ୍ୟ ଅଭିଯାନ ବର୍ଣ୍ଣନା କରି ଲେଖିଛନ୍ତି—

"କଳିଙ୍ଗ ସେନାବାହିନୀ ଦୁର୍ବାର ସଂଗ୍ରାମ ଲାଳସାର ବଶବର୍ତ୍ତୀ ହୋଇ ଅଗ୍ରସର ହେଉଛନ୍ତି । ନିଜେ ସମ୍ରାଟ ଖାରବେଳ ଏ ସଂଗ୍ରାମର ଅଧିନାୟକ ।

ସୈନ୍ୟବାହିନୀର ଅଗ୍ରଭାଗରେ ବିରାଟ ଶ୍ରମିକ ଦଳ । ପଥ-ପ୍ରଦର୍ଶନ ସେମାନଙ୍କର କାର୍ଯ୍ୟ, ଖାଲଢିପ ସମତଳ କରି, ବଣ-ଜଙ୍ଗଲ କାଟି ସେମାନେ ପଥ ନିର୍ମାଣ କରୁଛନ୍ତି । ସେମାନଙ୍କ ପଛରେ ପଦାତିକ ବାହିନୀ, ହାତରେ ଖଡ୍‌ଗ, ବର୍ଚ୍ଛା, ଢାଲ— କାନ୍ଧରେ ଧନୁତୂଣ । ନିଶଦାଢ଼ି ଲମ୍ବିପଡ଼ିଛି । କପାଳରେ ସିନ୍ଦୂର ଟିକା, ମୁଣ୍ଡରେ ନାଲି କନାର ପଗଡ଼ି ।

ତାଙ୍କ ପଛରେ ଅଶ୍ୱାରୋହୀ ସୈନ୍ୟଦଳ । ଘୋଡ଼ାମାନେ କେତେବେଳେ କଦମ ପକାଇ ଚାଲୁଛନ୍ତି ତ କେତେବେଳେ ଆଗ ଦଳ ସଙ୍ଗରେ ମିଶିବାପାଇଁ ଦଉଡ଼ ଯାଉଛନ୍ତି । ଅଶ୍ୱାରୋହୀ ତଳେ ପଡ଼ିଯିବା ଭୟରେ ଲଗାମ ଭିଡ଼ ଧଇଲେ ଆଗ ଦୁଇଗୋଡ଼ ଉପରକୁ ଟେକି ଘୋଡ଼ାମାନେ ହ୍ରେଷାରବ କରୁଛନ୍ତି । ଅଶ୍ୱାରୋହୀମାନଙ୍କ ପଛରେ ଗଜାରୋହୀ ସୈନ୍ୟ । ପର୍ବତ ପରି ମତ୍ତମାତଙ୍ଗଦଳ ଆଗରୁ ଆଗକୁ ଚାଲୁଛନ୍ତି । କାହାରି ପ୍ରତି ଭୟ ନାହିଁ କି ଭ୍ରୂକ୍ଷେପ ନାହିଁ । ଦୂରରୁ ଦେଖିଲେ ମେଘଖଣ୍ଡ ମାଡ଼ି ଆସିଲାପରି ପ୍ରତୀତ ହୁଏ । କାହା ମୁଣ୍ଡରେ ସିନ୍ଦୂର ଟିକା, କାହା ମୁଣ୍ଡରେ ମୋତିର ଝାଲେରି । ସେମାନଙ୍କ ବୃଂହଣ ଧ୍ୱନି ମେଘର ଗର୍ଜନକୁ ବଳିପଡୁଛି ।

ଗଜାରୋହୀ ସୈନ୍ୟବାହିନୀଙ୍କ ପଛରେ ଏକ ଶ୍ୱେତବର୍ଣ୍ଣ ମତ୍ତମାତଙ୍ଗ । ମସ୍ତକରେ ସିନ୍ଦୂର ଲିପିତ । ଠିକ୍ ବର୍ଷାକାଳରେ ପର୍ବତ ଉପରେ ଥିବା ମେଘଖଣ୍ଡ ଦେହରେ ଅସ୍ତଗାମୀ ସୂର୍ଯ୍ୟଙ୍କର ଲୋହିତ କିରଣ ପଡ଼ିଲା ପରି ପ୍ରତୀତ ହେଉଛି । ମଣିମୁକ୍ତାର ଝାଲେରି ତାର ମଦଜଳ କର୍ଦ୍ଦମିତ ମସ୍ତକରୁ ଓହଳି ପଡ଼ୁଛି । ସେହି ମାତଙ୍ଗର ପୃଷ୍ଠଦେଶରେ ଏକ ହେମ ସିଂହାସନ ଉପରେ ସ୍ୱୟଂ ସମ୍ରାଟ ଖାରବେଳ ସମାସୀନ । ଉପରେ ପ୍ରବାଳ ଖଚିତ ଚାନ୍ଦୁଆ । ଦୁଇଜଣ ଷୋଡ଼ଶୀ ତନ୍ୱୀ ବ୍ୟଜନିକା ବ୍ୟଜନ ଚାଳନାରେ ବ୍ୟସ୍ତ । ସମ୍ରାଟଙ୍କ ଦକ୍ଷିଣ ପାର୍ଶ୍ୱରେ ମହାମନ୍ତ୍ରୀ ଏବଂ ବାମ ପାର୍ଶ୍ୱରେ ମହାବଳାଧ୍ୟକ୍ଷ ସ୍ୱତନ୍ତ୍ର ହସ୍ତିରେ ଆରୋହଣ କରି ଚାଲିଛନ୍ତି ।

ସମ୍ରାଟଙ୍କ ପଶ୍ଚାତ୍ ଭାଗରେ ଅଶ୍ୱଚାଳିତ ରଥମାନଙ୍କରେ ସେବାଦାସୀ, ପରିଚାରିକା, ନୃତ୍ୟକାରୀ, ସୁଗାୟିକା, ଭାଟ, ବାଦ୍ୟ-କାର ଏବଂ ସଭାସଦଗଣ । ସେମାନଙ୍କ ପଛରେ ଗୋ-ଶକଟରେ

ଖାଦ୍ୟ, ବସ୍ତ୍ର, ଘଣ୍ଟି ଏବଂ ଅନ୍ୟାନ୍ୟ ଉପକରଣ ସମୂହ । ସର୍ବ ପଶ୍ଚାତରେ ବ୍ୟବସାୟୀମାନେ ସେମାନଙ୍କ ବ୍ୟବସାୟ ସାମଗ୍ରୀ ଧରି ଚାଲିଛନ୍ତି । ମୋଟ ଉପରେ ସମଗ୍ର କଳିଙ୍ଗ ସାମ୍ରାଜ୍ୟ ଯେପରି ସାଗର ସଦୃଶ ପାଣ୍ଡ୍ୟ ରାଜ୍ୟ ଗ୍ରାସ କରିବାକୁ ଧାଇଁଛନ୍ତି । ଭଅର ଚଞ୍ଚଳ ସମୁଦ୍ରର ଲହରୀ, ହସ୍ତୀ, ଘୋଡ଼ା ଜଳଜୀବ ଏବଂ ସୈନ୍ୟ ଫଉଜ ଜଳରାଶି ପରି ଶୋଭାପାଉଛନ୍ତି । ହସ୍ତୀର ବୃଂହଣ, ଅଶ୍ୱର ହ୍ରେଷା-ରବ ସାଗର ଗର୍ଜନ ପରି ପ୍ରତୀତ ହେଉଛି । ସୈନ୍ୟ ଫଉଜର ଏ ଯାତ୍ରାରେ ଦିଗ୍‌ବିଦିଗ ନିସ୍ତବ୍ଧ । ଆକାଶ, ପୃଥିବୀ, ଅରଣ୍ୟ, ପର୍ବତ ସେମାନଙ୍କ ପଦଚ୍ଚଳନାରେ କମ୍ପମାନ । ଭାଟମାନେ ସ୍ୱତନ୍ତ୍ର ଦ୍ରୁତଗାମୀ ଅଶ୍ୱପୃଷ୍ଠରେ ଆରୋହଣ କରି ବୀରତ୍ୱର ଗାଥା ଗାନ କରି ସୈନ୍ୟମାନଙ୍କୁ ପ୍ରେରଣା ଦେଉଛନ୍ତି । ସେମାନଙ୍କ ସେ ଉଦ୍‌ବୋଧିପକ କବିତାରେ ସୈନ୍ୟମାନଙ୍କ ହୃଦୟରେ ବୀର ରସ ପ୍ରବାହିତ ହେଉଛି । କିଏ ଅସି ବୁଲାଇ ଆଗକୁ କୁଦିଯାଉଛି ତ, କିଏ ବର୍ଚ୍ଛା ଧରି ଊର୍ଦ୍ଧ୍ୱକୁ ଡେଇଁପଡ଼ୁଛି ।”

ଲେଖକଙ୍କର ଏ ଯୁଦ୍ଧବର୍ଣ୍ଣନା ସଂପୂର୍ଣ୍ଣ କାଳ୍ପନିକ ହେଲେ ମଧ୍ୟ ତତ୍‌କାଳୀନ ଐତିହାସିକ ବିବରଣୀ, ଦେଶର ଅବସ୍ଥା ଓ ଯୁଦ୍ଧର ଆନୁସଙ୍ଗୀକ ବିବରଣୀ ଆଲୋଚନା କଲେ ଯୁଦ୍ଧଯାତ୍ରାର ଏ ବିବରଣୀ ଅପ୍ରାସଙ୍ଗୀକ ମନେହୁଏ ନାହିଁ । ଏ ଅଭିଯାନ ପାଠ କରିବାବେଳେ ଶରୀରରେ ସ୍ୱତଃ ରୋମାଞ୍ଚ ଜାତ ହୁଏ ଏବଂ ପାଠକ ମଧ୍ୟଯୁଗର ଏକ ଯୁଦ୍ଧ ଅଭିଯାନ ସ୍ୱଚକ୍ଷୁରେ ଦେଖୁଥିବା ପରି ମନେହୁଏ ।

ଲେଖକଙ୍କର ‘ଅକାଳ କୁହୁଡ଼ି’ ପୁସ୍ତକରେ ଯୁଦ୍ଧ ପାଇଁ ଏକ ପ୍ରେରଣାଦାୟକ ବିବରଣୀ ପ୍ରକାଶ ପାଇଛି । ଓଡ଼ିଶାରେ ଶେଷ ସ୍ୱାଧୀନ ଗଜପତି ମୁକୁନ୍ଦଦେବ କୋଟସମା ଦୁର୍ଗରେ ରହି ମୁସଲମାନ-

ମାନଙ୍କ ସହ ୧୮୮୨ ଖ୍ରୀଷ୍ଟାବ୍ଦରେ ଯୁଦ୍ଧରେ ବ୍ୟାପୃତ ଥିବାବେଳେ ବଙ୍ଗନବାବ ସୁଲେମାନ କରାଣୀଙ୍କ ପୁତ୍ର ବାଇଜଦଙ୍କ ନେତୃତ୍ୱରେ ଆଉ ଗୋଟିଏ ଦଳ ଶିଖିମନାଇଙ୍କ ସହ ମୟୂରଭଞ୍ଜର ଜଙ୍ଗଲ ମଧ୍ୟ ଦେଇ ଉତ୍କଳର ରାଜଧାନୀ ବାରବାଟୀ ଆଡ଼କୁ ଅଗ୍ରସର ହେଲେ । ବାଟରେ ଅରଣ୍ୟଗଡ଼ ନାମକ ଏକ କ୍ଷୁଦ୍ର ପାର୍ବତ୍ୟ ଦୁର୍ଗର ସର୍ଦ୍ଦାର ବିଶ୍ୱନାଥ ତାଙ୍କର ଗତିରୋଧ କରିବା ପାଇଁ ମନ୍ତ୍ରଣାସଭା ଡକାଇଛନ୍ତି । ଲେଖକ ଲେଖିଛନ୍ତି—

"ବଣ ଜଙ୍ଗଲର ଜବାନ, ଜୋତଦାର, ତାଲୁକଦାର, ସର୍ଦ୍ଦାର, ପାଇକ ଏକତ୍ରିତ ହେଲେ ।

ସର୍ଦ୍ଦାର ବିଶ୍ୱନାଥ ସୈନିକମାନଙ୍କୁ ପ୍ରବୋଧନା ଦେଇ କହିଲେ— ଆଜିର ରଣଯାଗରେ ଆମକୁ ଆହୁତି ଦେବାକୁ ପଡ଼ିବ । ଉତ୍କଳର ସିଂହାସନ ଘୋର ବିପଦର ସମ୍ମୁଖୀନ । ଉତ୍ତର, ଦକ୍ଷିଣ ଓ ପଶ୍ଚିମ ତିନି ଦିଗରେ ଶତ୍ରୁ । ଆଗରେ ବିଶାଳ ପଠାଣବାହିନୀ । ଆମର ଶକ୍ତି କ୍ଷୀଣ, ତଥାପି ଅଗ୍ରସର ହେବାକୁ ପଡ଼ିବ । ଭଗବାନ ଶଙ୍କରହିଁ ଆମ୍ଭମାନଙ୍କର ଏକମାତ୍ର ସହାୟ । ତାଙ୍କର ଚଞ୍ଚଳ ପଦ-କ୍ଷେପରେ ଅଶିବ, ଅସୁନ୍ଦର ସମସ୍ତ କିଛି ଚୂର୍ଣ୍ଣ ହେଉ । ଦିଗ-ଦିଗନ୍ତରେ ଜଟା ଖୋଲିପଡ଼ୁ । ହାତର ତ୍ରିଶୂଳ ସୂର୍ଯ୍ୟ-କିରଣରେ ଝଲସି ଉଠୁ । ଡମ୍ବରୁର ତାଳେ ତାଳେ ଖ୍ୟାପଣ ନର୍ତ୍ତନ ହେଉ, ଆରମ୍ଭ ହେଉ ନଟରାଜର ଧ୍ୱଂସଲୀଳା—'ଜୟ ହରହର ଶଙ୍କର' ।

ଉପସ୍ଥିତ ବୀରମାନେ କଟୀସ୍ଥିତ କରବାଳରେ ହସ୍ତ ନିକ୍ଷେପ କରି ସମସ୍ୱରରେ କହି ଉଠିଲେ—'ଜୟ ହରହର ଶଙ୍କର' ।

ସର୍ଦ୍ଦାର ପୁଣି କହିଲେ—ବୀରଗଣ ! ଆଜ ଏକ ପରମ ପରୀକ୍ଷାର ବେଳ ଆସି ପହଞ୍ଚିଛି । ଉତ୍କଳର ଯେଉଁ ସିଂହାସନ ପ୍ରତି ଆମ୍ଭେମାନେ ଏତେଦିନ ଯାଏ ଅନୁଗତ୍ୟ ଦେଖାଇ ଆସିଛନ୍ତି, ସେ ଆଜ ଶତ୍ରୁର ବ୍ୟୂହରେ । ଆମ୍ଭେମାନେ କ'ଣ ନିଶ୍ଚିନ୍ତ ରହିବା ?

ଜଣେ କିଏ ମୃଦୁ ସ୍ୱରରେ ପ୍ରତିବାଦ କଲା—ଆମର ଏ କ୍ଷୀଣ ଶକ୍ତିରେ ପ୍ରତିରୋଧ କରିବା କ'ଣ ଉଚିତ ହେବ ?

ବୃଦ୍ଧ ସର୍ଦ୍ଦାର ଦର୍ପିତ ସ୍ୱରରେ ଉତ୍ତର ଦେଲେ—ନିଶ୍ଚୟ ପାରିବା । ଆମ୍ଭମାନଙ୍କର ଶକ୍ତି କ୍ଷୀଣ ହେଲେ ମଧ୍ୟ ମନର ବଳ କମ୍ ନୁହେଁ । ଆମ୍ଭେମାନେ କ୍ଷତ୍ରିୟ । ମନେରଖ, କ୍ଷତ୍ରିୟ କେବେ ଭୟରେ ମୁଣ୍ଡ ନୁଆଏଁ ନାହିଁ । ତାର ଧର୍ମ ଓ ଇଜ୍ଜତ ସବୁଠାରୁ ବଡ଼ । ତାର ଧର୍ମ ହେଉଛି—ଦେବତାଙ୍କୁ ପ୍ରଣାମ, ଦେବବିଗ୍ରହ ଓ ଗୋ-ବ୍ରାହ୍ମଣଙ୍କୁ ରକ୍ଷା, ବିପନ୍ନଙ୍କୁ ଉଦ୍ଧାର ଏବଂ କାହାରି ପ୍ରତି ଅତ୍ୟାଚାର ନ କରିବା । ଇଜ୍ଜତ ହେଉଛି—ଧର୍ମର ଆଭରଣ । ଦେଶର ସ୍ୱାଧୀନତା ତଥା ନିଜର ସ୍ୱାଧୀନତା ହେଉଛି ମର୍ଯ୍ୟାଦା; ନିଜ ସ୍ତ୍ରୀର ସତୀତ୍ୱ ହେଉଛି ମର୍ଯ୍ୟାଦା । କେବଳ ସ୍ତ୍ରୀ ନୁହେଁ; ନାରୀ-ଜାତି ପ୍ରତି ସମ୍ମାନ ପ୍ରଦର୍ଶନ ହେଉଛି ତାର ମର୍ଯ୍ୟାଦା । ତାକୁ ପ୍ରାଣ ଦେଇ ରକ୍ଷା କରିବା ତାର ଧର୍ମ ।

"ଜିତେନ ଲଭ୍ୟତେ ଲକ୍ଷ୍ମୀର୍ମୃତେନାପି ସୁରାଙ୍ଗନା
କ୍ଷଣ ବିଧ୍ୱଂସିନୀକାୟେ କାଚିନ୍ତା ମରଣେ ରଣେ ।"

ଉପରୋକ୍ତ ବାକ୍ୟାଂଶଟି କେବଳ ପ୍ରେରଣାଦାୟକ ବା ଉତ୍ତେଜକ ନୁହେଁ; ଏଥିରେ ଦେଶାତ୍ମବୋଧ ଓ ଜାତୀୟତାର ଭାବ ପୂର୍ଣ୍ଣମାତ୍ରାରେ ରହିଛି । ତାହା ସହିତ କ୍ଷତ୍ରିୟର ଧର୍ମ ଓ କର୍ତ୍ତବ୍ୟ ସମ୍ପର୍କରେ ମଧ୍ୟ ଉପଦେଶ ରହିଛି । ମହାଭାରତରେ ପିତାମହ

ଖ୍ରୀଷ୍ଟଙ୍କ ଗଜମାଉ ସଂଗ୍ରାମରୁ ଉପଦେଶ ଓ ରାଜପୁତମାନଙ୍କର ବୃତଣ ସଙ୍ଗୀତର ପ୍ରଭାବ ଔପନ୍ୟାସିକଙ୍କ ଉପରେ ପଡ଼ିଥିବାର ମନେ ହୁଏ ।

ସେହିପରି 'ଗୃହସ୍ଥର ବଧୂ ପୁଣି ସାଧକର ଶକ୍ତି' କଥାରେ ଲେଖକ ଭାରତୀୟ ପ୍ରଥମ ସ୍ୱାଧୀନତା ସଂଗ୍ରାମ ସଂପର୍କରେ ଉଲ୍ଲେଖ କରିଛନ୍ତି । ୧୮୫୭ ମସିହାରେ ହଜାରୀବାଗ ଜେଲରୁ ପଳାଇ ଆସି ବୀର ସୁରେନ୍ଦ୍ର ସାଏ କପରି ଗରିଲା ଯୁଦ୍ଧରେ ଇଂରେଜମାନଙ୍କୁ ବ୍ୟତିବ୍ୟସ୍ତ କରି ପକାଇଛନ୍ତି ଏବଂ ଚନ୍ଦନ ହଜୁରୀ ଖାନ୍‌ସିଗଣୀଙ୍କ ପରାମର୍ଶଦାତା ରୂପେ କପରି ଇଂରେଜମାନଙ୍କ ସହିତ ଯୁଦ୍ଧ କରିଛନ୍ତି, ତାହା ଏଥିରେ ବର୍ଣ୍ଣିତ ହୋଇଛି ।

ବର୍ତ୍ତମାନ ଯୁଗ ବିଜ୍ଞାନଯୁଗ । ଏ ଯୁଗରେ ପୂର୍ବକାଳର ଅସ୍ତ୍ର-ଶସ୍ତ୍ର ଆଉ ବ୍ୟବହୃତ ହେଉ ନାହିଁ । ବର୍ତ୍ତମାନ ଯୁଗରେ ଯୁଦ୍ଧପାଇଁ ସାଧାରଣ ଅସ୍ତ୍ର ହେଉଛି ରାଇଫେଲ । ଏହାବ୍ୟତୀତ ଷ୍ଟେନଗନଠାରୁ ଆରମ୍ଭ କରି ରକେଟ ଓ ପରମାଣୁ ଅସ୍ତ୍ର ପର୍ଯ୍ୟନ୍ତ କେତେ ଯେ ଯନ୍ତ୍ରାସ୍ତ୍ର ବାହାରିଲଣି ତାହାର ଇୟତ୍ତା ନାହିଁ । ଏ ଯୁଗରେ ପୁରାତନ ଅସ୍ତ୍ରଶସ୍ତ୍ରର ବ୍ୟବହାର ଦୂରେ ଥାଉ, ତା' ସଂପର୍କରେ କଳ୍ପନା ମଧ୍ୟ କରାଯାଇପାରେ ନାହିଁ । ଆଧୁନିକ ଯୁଦ୍ଧାସ୍ତ୍ର ଓ ଯୁଦ୍ଧ ସମ୍ପର୍କରେ ମଧ୍ୟ ଶ୍ରୀ ମଲ୍ଲିକ ଲେଖମା ରଚନାରୁ ବିରତ ହୋଇ ନାହାନ୍ତି ।

୨ୟ ବିଶ୍ୱଯୁଦ୍ଧ ସମୟରେ ନେତାଜୀ ସୁଭାସଚନ୍ଦ୍ର ବୋଷ ଭାରତରୁ ଛଦ୍ମ ବେଶରେ ପଳାଇ ଯାଇ ପ୍ରଥମେ ବର୍ଲିନ ଓ ପରେ ସିଂଗାପୁରରେ କପରି ଆଜାଦ ହିନ୍ଦ୍ ଫୌଜ ଗଠନ କରି ଇଂରେଜ ସାମ୍ରାଜ୍ୟବାଦ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲେ ଏବଂ ହିଟଲର ଉପରେ ସମଗ୍ର ବିଶ୍ୱବିଜୟ ପରିକଳ୍ପନା କରିଥିଲେ ସେ ବିଷୟକୁ

ନେଇ ଶ୍ରୀ ମଲ୍ଲିକ 'ଛଦ୍ମବେଶରେ ସୁବାସ' ଓ 'ଅଦୃଷ୍ଟର ପରିହାସ' ନାମରେ ଦୁଇଖଣ୍ଡ ପୁସ୍ତକ ରଚନା କରିଛନ୍ତି । ପୁସ୍ତକ ଦୁଇଟିରେ ମୁଖ୍ୟତଃ ୨ୟ ବିଶ୍ୱଯୁଦ୍ଧ ସମ୍ପର୍କୀୟ ବର୍ଣ୍ଣନା ରହିଛି ।

ଆଧୁନିକ ଯୁଦ୍ଧାସ୍ତ୍ରରେ କିପରି ଯୁଦ୍ଧ ହୁଏ, ତାହା ତାଙ୍କ ପୁସ୍ତକରେ ବିଶେଷଭାବେ ବର୍ଣ୍ଣନା କରାଯାଇଥିଲେ ମଧ୍ୟ ଯୁଦ୍ଧର ପ୍ରଥମାବସ୍ଥାରେ ବ୍ରିଟିଶର 'ପ୍ରିନ୍ସ ଅଫ ଓ୍ୱେଲସ' ଓ 'ରିପାଲସ୍' ଯୁଦ୍ଧଜାହାଜ ଦୁଇଟି କିପରି ନଷ୍ଟ ହେଲ, ସେ ସଂପର୍କରେ ସେ ବିଶଦ ବିବରଣୀ ପ୍ରଦାନ କରିଛନ୍ତି । ଏ ଦୁଇଟି ୨ୟ ବିଶ୍ୱଯୁଦ୍ଧ ସମୟରେ ସର୍ବବୃହତ ଯୁଦ୍ଧଜାହାଜ । ଦୁଇଟି ଭାସମାନ ସୁରକ୍ଷିତ ଦୁର୍ଗ କହିଲେ ଚଳେ । ଏ ଜାହାଜ ଦୁଇଟି ବୁଡ଼ିଯିବାରୁ ସେତେବେଳର ବ୍ରିଟିଶ ପ୍ରଧାନମନ୍ତ୍ରୀ ମିଃ ଚର୍ଚ୍ଚିଲ୍ ଅତ୍ୟନ୍ତ ଦୁଃଖର ସହିତ ବେତାର ଭାଷଣରେ କହିଥିଲେ—

'Their loss alters the whole balance of naval power in Malayan waters in favour of Japan.''

ଜାହାଜ ଦୁଇଟି ବୁଡ଼ିବା ଓ ସେଥିପାଇଁ ହୋଇଥିବା ଯୁଦ୍ଧ ସଂପର୍କରେ ଶ୍ରୀ ମଲ୍ଲିକ ଲେଖିଛନ୍ତି—

"ଜାପାନୀମାନଙ୍କ ମାଳୟ ଅଭିଯାନ ଖବର ପାଇ ଦୁଇଟିଯାକ ଯୁଦ୍ଧଜାହାଜ ମାଳୟ ଅଭିମୁଖେ ଯାତ୍ରା କଲେ । ପ୍ରଶାନ୍ତ ମହା-ସାଗରର ବୁକୁରେ ଜାହାଜ ଦୁଇଟି ତରଙ୍ଗ ତୋଳି ଅଗ୍ରସର ହେବାରେ ଲାଗିଛନ୍ତି । ହଠାତ୍ ମହାସାଗରର ଜଳରାଶି ଭେଦ କରି ଏକ ସବ୍‌ମେରିନର ପେରିସ୍କୋପ ଦେଖାଗଲା । ଜାହାଜ ଦୁଇଟି ତାହା ଲକ୍ଷ୍ୟ କରି ନାହାନ୍ତି । ମୁହୂର୍ତ୍ତକ ମଧ୍ୟରେ ପେରିସ୍କୋପଟି ପାଣି

ଭିତରେ ବୁଡ଼ିଗଲା । ତା'ପରେ ଜାହାଜର ଗଡ଼ର ଯନ୍ତ୍ରରେ ଦେଖାଗଲା ଯେ ଗୋଟିଏ ଜାପାନୀ ଉଡ଼ାଜାହାଜ ସେ ଆଡ଼କୁ ଆସୁଛି । ସଂଗେ ସଂଗେ ଜାହାଜର ବିପଦଜ୍ଞାପକ ଘଣ୍ଟି (ସାଇରନ୍) ଗୁଡ଼ିକ ବାଜିଉଠିଲା । ମାତ୍ର ଉଡ଼ାଜାହାଜଟି ଦୂର ଆକାଶରେ କେବଳ ଚକ୍କର ମାରି ଗ୍ଭଲିଗଲା । 'ପ୍ରିନ୍ସ ଅଫ ଓ୍ୱେଲସ' ଓ 'ରିପାଲ୍ସ' ଜାହାଜ ଦୁଇଟି ଆଉ ଅଗ୍ରସର ନ ହୋଇ ସିଙ୍ଗାପୁର ଅଭିମୁଖେ ମୁହଁ ଫେରାଇଲେ ।

ଜାହାଜ ଦୁଇଟି ଚୀନ ସାଗରରେ ଆସୁଥିବାବେଳେ ପ୍ରାୟ ୫୦ । ୬୦ଟି ଜାପାନୀ ଉଡ଼ାଜାହାଜ ଆସି ଜାହାଜ ଦୁଇଟିକୁ ଆକ୍ରମଣ କଲେ । ସଂଗେ ସଂଗେ 'ପ୍ରିନ୍ସ ଅଫ ଓ୍ୱେଲସ୍' ଓ 'ରିପାଲସ' ଜାହାଜର ବିମାନ ବିଧ୍ୱଂସୀ କମାଣଗୁଡ଼ିକ ଗୁଳିବର୍ଷଣ କରିବାରେ ଲାଗିଲେ । ମାତ୍ର ଉଡ଼ାଜାହାଜଗୁଡ଼ିକ କମାଣଗୋଳାର ପରିସରଠାରୁ ବହୁ ଦୂରରେ । ଏଣେ ଜାପାନ ତରଫରୁ ଆରମ୍ଭ ହେଲା ଟର୍ପେଡ଼ ବୃଷ୍ଟି । ଟର୍ପେଡ଼ ଗୁଡ଼ିକ ସାଧାରଣତଃ ସବ୍‌ମେରାଇନରୁ ଗୃଳି କରାଯାଏ । ମାତ୍ର ଏ ଟର୍ପେଡ଼ ଗୁଡ଼ିକ କେଉଁଠୁ କିଭଳି ଭାବରେ ଆସୁଛି ଜଣାପଡ଼ିଲା ନାହିଁ । ଯାହାହେଉ ଜାହାଜ ଦୁଇଟିର ଶକ୍ତ ଇସ୍ପାତ ବର୍ମ ଯୋଗୁଁ ଟର୍ପେଡ଼ ମାଡ଼ରୁ ରକ୍ଷା ମିଳିଲା । ଏଥର ଭଲରେ ଭଲରେ ସିଙ୍ଗାପୁରରେ ପହଞ୍ଚି ପାରିଲେ ରକ୍ଷା । ମାତ୍ର ଶେଷ ରକ୍ଷା ହୋଇପାରିଲା ନାହିଁ । ହଠାତ୍ କେତୋଟି ଜାପାନ ଉଡ଼ାଜାହାଜ ଜାହାଜ ଦୁଇଟିର ଛମିନି ଉପରେ ପଡ଼ି ବୋମା ପକାଇଦେଲେ । ସଙ୍ଗେ ସଙ୍ଗେ ଭୀଷଣ ବିସ୍ଫୋରଣ । ତା'ପରେ କୋଟି କୋଟି ଟଙ୍କା ବ୍ୟୟରେ ନିର୍ମିତ ଜାହାଜ ଦୁଇଟି ସମୁଦ୍ରର ଅତଳ-ଗର୍ଭରେ ଲୀନ ହୋଇଗଲା ।

ପୂର୍ବକାଳରେ ରାଜାମାନେ ଦୁର୍ଗ କରି ତା' ଚାରିପାଖରେ ପରିଖା ଖୋଳାଇ କପରି ଶତ୍ରୁ ଆକ୍ରମଣରୁ ରକ୍ଷା ପାଉଥିଲେ, ତାହା ବର୍ଣ୍ଣିତ ହୋଇଛି । ବର୍ତ୍ତମାନର ବିଜ୍ଞାନ ଯୁଗରେ ମଧ୍ୟ ସେହିଭଳି ଦୁର୍ଗଗୁଡ଼ିକ ରହିଛି । ଫ୍ରାନ୍‌ସର ଏହି ଦୁର୍ଗ ବିଷୟରେ ଶ୍ରୀ ମଲ୍ଲିକ ଲେଖିଛନ୍ତି —

'ଫ୍ରାନ୍‌ସ ନିଶ୍ଚିନ୍ତ । ତାର ସୀମାନ୍ତରେ ସୁଇଜରଲଣ୍ଡଠାରୁ ଆରମ୍ଭ କରି ମଣ୍ଟେଭେଡ଼ି ପର୍ଯ୍ୟନ୍ତ ମ୍ୟାଜିନ ଲାଇନ୍ ଅବସ୍ଥିତ । ଜର୍ମାନକୁ ଭୟ କରିବାର କାରଣ ନାହିଁ ।

ମ୍ୟାଜିନ ଲାଇନ ଅର୍ଥ—ଅଭେଦ୍ୟ ଦୁର୍ଗରାଜିର ସମଷ୍ଟି । ପ୍ରଥମ ମହାଯୁଦ୍ଧ ପରେ ସର୍ଜେଣ୍ଟ ମ୍ୟାଜିନୋ ଭବିଷ୍ୟତରେ ହିନେ ଜର୍ମାନ ଫ୍ରାନ୍‌ସ ଆକ୍ରମଣ କରିବ, ଏହି ଆଶଙ୍କାରେ ସେଗୁଡ଼ିକ ନିର୍ମାଣ କରାଇଥିଲେ । ମ୍ୟାଜିନୋ ଲାଇନର ପ୍ରତ୍ୟେକ ଅଂଶ ସ୍ୱତନ୍ତ୍ର । କିନ୍ତୁ ଦୁର୍ଗଗୁଡ଼ିକର ଅଭ୍ୟନ୍ତରରେ ପରସ୍ପରର ସଂଯୋଗ ରହିଛି । ପ୍ରତ୍ୟେକ ଦୁର୍ଗରେ ୬ଟି ବିଭାଗ । ଦୁର୍ଗ ମଧ୍ୟରେ ରହି ଶତ୍ରୁର ଗତିବିଧି ପର୍ଯ୍ୟବେକ୍ଷଣ କରିବା, ଶତ୍ରୁର ଗତିରୋଧ ପାଇଁ ପ୍ରତି-ବନ୍ଧକ ସୃଷ୍ଟି କରିବା, ବୋମା ମାଡ଼ରୁ ରକ୍ଷା ପାଇବାର ଉପାୟ ଏବଂ ସର୍ବୋପରି ଦୁର୍ଗ ମଧ୍ୟରେ ବନ୍ଧୁକ, କମାଣ, ତୋପ, ଟ୍ୟାଙ୍କ୍ ପ୍ରଭୃତି ରଖାଯାଇ ଶତ୍ରୁକୁ ଆଘାତ ଦେବାପାଇଁ ବ୍ୟବସ୍ଥା ଥିଲା । ଦୁର୍ଗର ଉପରିଭାଗରେ ଗଛ, ଲତା ରହି ତାକୁ ଘୋଡ଼ାଇ ରଖିଥିଲା । ଏହାବ୍ୟତୀତ ଦୁର୍ଗ ପାଖରେ ବଡ଼ ବଡ଼ ଖାଇ ଖୋଳା-ଯାଇ ଶତ୍ରୁର ଟ୍ୟାଙ୍କ୍‌ଗୁଡ଼ିକୁ ବନ୍ଦ କରି ରଖିବା ପାଇଁ ବ୍ୟବସ୍ଥା କରାଯାଇଥିଲା । ଖାଇଗୁଡ଼ିକ ସହିତ ନଦୀର ମଧ୍ୟ ସମ୍ପର୍କ ଥିଲା । ଆବଶ୍ୟକସ୍ଥଳେ ସେଗୁଡ଼ିକ ଜଳପୂର୍ଣ୍ଣ କରିଦିଆଯାଇ ଶତ୍ରୁସୈନ୍ୟ-ଙ୍କର ଗତିରୋଧର ବ୍ୟବସ୍ଥା କରାଯାଇ ପାରୁଥିଲା । ଦୁର୍ଗର ସୈନିକ-

ମାନଙ୍କୁ ଖାଦ୍ୟଦ୍ରବ୍ୟ ଓ ଅସ୍ତ୍ରଶସ୍ତ୍ର ଯୋଗାଇ ଦେବାପାଇଁ ଆଭ୍ୟନ୍ତରୀଣ ରାସ୍ତା ନିର୍ମିତ ହୋଇଥିଲା । ଏ ମ୍ୟାଜିନୋ ଲାଇନ୍ ଥିଲା ଦୁର୍ଗରାଜ ଅଭେଦ୍ୟ । ଏହାକୁ ଅତିକ୍ରମ କରି ଫ୍ରାନ୍ସ ମଧ୍ୟରେ ପ୍ରବେଶ କରିବା କୌଣସି ମତେ ସମ୍ଭବ ନୁହେଁ । ମାତ୍ର ହିଟଲର ଏକ କୌଶଳ ଅବଲମ୍ବନ କଲେ । ମ୍ୟାଜିନୋ ଲାଇନ୍ ଗୁଣ୍ଡି ହଠାତ୍ ୧୯୪୦ ମସିହା ମଇ ମାସ ୨୮ ତାରିଖରେ ୧୦ ଲକ୍ଷ ଜର୍ମାନ ଯାନ୍ତ୍ରିକ ବାହିନୀ ବେଲଜିୟମ୍ ମଧ୍ୟରେ ପଶି ମିଉଜ ନଦୀ ପାର ହୋଇ ପ୍ୟାରିସ ଅଭିମୁଖେ ବିଦ୍ୟୁତ୍ ଗତିରେ ଅଗ୍ରସର ହେଲେ । ଘଟଣାଟା ଏପରି ଅପ୍ରତ୍ୟାଶିତ ଭାବରେ ଘଟିଲା ଯେ, ଫରାସୀ ସମର ନାୟକମାନେ କଣ କରିବେ ଚିନ୍ତା ମଧ୍ୟ କରିପାରିଲେ ନାହିଁ ।

## ଉପସଂହାର :—

କାଳଚକ୍ରର ଆବର୍ତ୍ତନରେ ଚିର ଗୌରବାନ୍ୱିତ ଓଡ଼ିଆ ଜାତିକୁ ଅନେକ ସମୟରେ ବହୁ ଉତ୍ଥାନ ପତନ ମଧ୍ୟରେ ଗତି-କରିବାକୁ ପଡ଼ିଛି । କେତେବେଳେ ସେ ବିପୁଳ ସାମ୍ରାଜ୍ୟ, ଅକଳନୀୟ ଧନସମ୍ପତ୍ତିର ଅଧିକାରୀ ହୋଇଛି ତ, କେତେବେଳେ ଗଙ୍ଗା-ଗୋଦାବରୀ ମଧ୍ୟରେ ସଙ୍କୁଚିତ ବା ତହିଁରୁ କ୍ଷୀଣତର ହୋଇଅଛି । ବୀର ରାଜା ଓ ସେନାପତିଙ୍କ ଉତ୍ସାହ, ଉଦ୍ୟମ, ସଂଗଠନ ଶକ୍ତି, କୂଟନୀତି ଓ ଅସ୍ତ୍ରଶସ୍ତ୍ରର ଘନଘଟା ଉପରେ ଏହା ନିର୍ଭର କରିଅଛି । ଦୁର୍ବଳ ରାଜା ଜାତୀୟ ଧର୍ମ ଓ ସଂସ୍କୃତିର ହୃତ୍ପିଣ୍ଡ ଜଗନ୍ନାଥଙ୍କୁ ମଧ୍ୟ ରକ୍ଷା କରିବାକୁ ସମର୍ଥ ହୋଇ ନାହିଁ । ସୁରେନ୍ଦ୍ର ମହାନ୍ତିଙ୍କ ଶ୍ରେଷ୍ଠ ଉପନ୍ୟାସ 'ନୀଳଶୈଳ' ପାଠ କଲେ ଓଡ଼ିଆ ଜାତିର ଦୁର୍ଦ୍ଦଶା ଦେଖି ତଥା ମୁସଲମାନଙ୍କ ହସ୍ତରୁ ଜଗନ୍ନାଥଙ୍କୁ ରକ୍ଷା କରିବା ଲାଗି ରାମଚନ୍ଦ୍ର ଦେବଙ୍କର ଯେଉଁ

ପ୍ରାଣମୂର୍ଚ୍ଛା ପ୍ରଚେଷ୍ଟା, ତାହା କେଉଁ ଓଡ଼ିଆର ଆଖିରେ ଲୁହ ନ ଝରଏ ?? ଏସବୁର କାରଣ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ, ବିଶ୍ୱାସଘାତକଙ୍କ କୁଟିଳ ଚକ୍ରାନ୍ତ ଓ ରାଜାଙ୍କ ସଂଗ୍ରାମ ସାଧନାର ଅଭାବ, ଯୁଗୋପଯୋଗୀ ଅସ୍ତ୍ରଶସ୍ତ୍ର ନିର୍ମାଣର ଅସାମର୍ଥ୍ୟରୁ ଓଡ଼ିଆ ଜାତିକୁ ହିଁ ପରାଜୟ ବରଣ କରିବାକୁ ହୋଇଛି । କାରଣ ଅସ୍ତ୍ରଶସ୍ତ୍ରହିଁ ସଭ୍ୟତାର ନିୟାମକ । ଅସ୍ତ୍ର ବଳରେ ଗୋଟିଏ ବର୍ବର-ଜାତି ଜନ୍ମଚରର ସଭ୍ୟତାର ଅଧିକାଂଶ ଅନ୍ୟ ଜାତି ଉପରେ ପ୍ରଭୁତ୍ୱ ବିସ୍ତାର କରିପାରେ । ଯୁଗର ପରିବର୍ତ୍ତନ ସଙ୍ଗେ ସଙ୍ଗେ ମାନବର ଚିନ୍ତାଶକ୍ତିରେ ମଧ୍ୟ ପରିବର୍ତ୍ତନ ଘଟିଛି । ଫଳରେ ଆଦିମ ମାନବର ପଥରର ଅସ୍ତ୍ରଶସ୍ତ୍ର ବଦଳିଯାଇ ବିଂଶ ଶତାବ୍ଦୀର ମାନବ ପରମାଣୁ ବୋମାଦ୍ୱାରା ରାଜ୍ୟ ପରେ ରାଜ୍ୟ ନଷ୍ଟ କରି ନିଜର ପ୍ରଭାବ ବିସ୍ତାର କରି ଚାଲିଛି । ଏ ପର୍ଯ୍ୟାୟରେ ଆଲୋଚନା କଲେ ଦେଖିବାକୁ ମିଳେ ଯେ, ଗୁଳିଗୁଳାର ବିପୁଳ ପ୍ରବର୍ତ୍ତନ କାଳହିଁ ଉତ୍କଳୀୟ ସାମରିକ ସଂଗଠନର ଅସ୍ତକାଳ । କାରଣ ଓଡ଼ିଆ ପାଇକ କମାଣ, ବନ୍ଧୁକ ନିର୍ମାଣ କରିବାଲାଗି ସୁଯୋଗ ପାଇ ନାହିଁ କିମ୍ବା ବିଶ୍ୱର ସ୍ଥିତି ସମ୍ପର୍କରେ ସଚେତନ ହୋଇପାରି ନାହିଁ । ଯାହା ଫଳରେ ଊନବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଓଡ଼ିଆ ସୈନିକଙ୍କୁ ଖଣ୍ଡା ତରବାରିର ବ୍ୟବହାର କରିବାକୁ ପଡ଼ିଛି । ଯଦିବା କାଞ୍ଚିଯୁଦ୍ଧ ବେଳକୁ ଗୁଳିଗୋଳା ଭାରତକୁ ନ ଆସିଥିଲେ ମଧ୍ୟ ପୁରୁଷୋତ୍ତମ ଦେବଙ୍କ ରଚନାରେ ତାହାର ପ୍ରୟୋଗ ଦେଖିବାକୁ ମିଳେ; ମାତ୍ର ବାସ୍ତବ କ୍ଷେତ୍ରରେ ତାହାର ବ୍ୟବହାର ହୋଇଥିବା ସମ୍ଭବ ନୁହେଁ ।

ଏହି ସୁଯୋଗରେ ୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶାକୁ ଅଧିକାର କରିବାରେ ସକ୍ଷମ ହୋଇପାରିଛନ୍ତି । ଓଡ଼ିଶାର

ଶ୍ରେଷ୍ଠ ବୀର ବକ୍‌ସି ଜଗବନ୍ଧୁ ଓ ସୁରେନ୍ଦ୍ର ସାଏ ଇଂରେଜମାନଙ୍କର କୁଟଳକୌଶଳ ବ୍ୟବହାର ତଥା ସୁଶିକ୍ଷିତ ଗୋରା ସୈନ୍ୟମାନଙ୍କ ସଙ୍ଗରେ ମୁକାବିଲା କରି ନ ପାରି ଶେଷରେ ଗରିଲା ଯୁଦ୍ଧର ଆଶ୍ରୟ ନେଇଛନ୍ତି । ମାତ୍ର ଶେଷରେ ସଫଳ ନ ହୋଇ ଦେଶ ଓ ଜାତି ପାଇଁ ଜୀବନ ଉତ୍ସର୍ଗ କରିଯାଇଛନ୍ତି ।

ବକସୀ ଜଗବନ୍ଧୁଙ୍କର ଜୀବନୀକୁ ନେଇ ପଣ୍ଡିତ ସୂର୍ଯ୍ୟନାରାୟଣ ଦାସଙ୍କର ପାଇକ ବିଦ୍ରୋହ, ମନୋରଞ୍ଜନ ଦାସଙ୍କର ବକ୍‌ସୀ ଜଗବନ୍ଧୁ ନାଟକ ଏବଂ କେତେକ କ୍ଷୁଦ୍ର ଗଳ୍ପ ପ୍ରକାଶ ପାଇଛି । ସେହିପରି ସୁରେନ୍ଦ୍ର ସାଏଙ୍କ ଜୀବନୀକୁ ଭିତ୍ତିକରି ଶ୍ରୀ ଅନିରୁଦ୍ଧ ଦାସ 'ବୀର ସୁରେନ୍ଦ୍ର ସାଏ' ପୁସ୍ତକ ରଚନା କରିଛନ୍ତି ।

ଉପରୋକ୍ତ ପୁସ୍ତକମାନ ସମରକୁ ଉପଜୀବ୍ୟ କରି ରଚିତ ନ ହୋଇଥିଲେ ହେଁ ତାହା ପାଠକ ପ୍ରାଣକୁ ବୀରରସରେ ଆପ୍ଳୁତ କରେ । ଏ ଜାତିର ସନ୍ତାନ ହସି ହସି ପ୍ରାଣ ଦେଇପାରେ । ମାତ୍ର ଜାତିର ଐତିହ୍ୟ କିମ୍ବା ସଂସ୍କୃତିକୁ ବିନ୍ଦୁଏ ରକ୍ତ ଥିବା ପର୍ଯ୍ୟନ୍ତ ଶତ୍ରୁ ହସ୍ତରେ ଅର୍ପଣ କରେ ନାହିଁ—ତାହାହିଁ ଓଡ଼ିଆର ବୈଶିଷ୍ଟ୍ୟ ଓ ଓଡ଼ିଆର ଜାତୀୟ ପ୍ରୀତି ।

ବକ୍‌ସୀ ଜଗବନ୍ଧୁଙ୍କ ସୈନ୍ୟମାନେ କିପରି ଗରିଲା ଯୁଦ୍ଧ କରୁଥିଲେ, 'ପାଇକ ବିଦ୍ରୋହ' ପୁସ୍ତକରେ ଥିବା ଗଙ୍ଗପଡ଼ା ଖଣ୍ଡ ଯୁଦ୍ଧରେ ତାହା ନିମ୍ନରୂପେ ବର୍ଣ୍ଣନା କରାଯାଇଛି—

"ଅପ୍ରେଲ ୨ ତାରିଖ ସନ୍ଧ୍ୟା ସମୟକୁ ଇର୍ମି ସାହେବ ଖୋର୍ଦ୍ଧାଠାରୁ ଦୁଇ ମାଇଲ ଦୂରରେ ଅବସ୍ଥିତ ଗଙ୍ଗପଡ଼ା ଗ୍ରାମରେ ହାଜର ହେଲେ । ଏହି ଇଂରେଜ ସୈନ୍ୟଦଳର ଅଗ୍ରଗତିର ସମ୍ବାଦ ଆଗରୁ ପାଇ ବିଦ୍ରୋହୀମାନେ ଗଂଗପଡ଼ାଠାରେ କାଠ, ପଥର, ଢିମା ପ୍ରଭୃତି ପକାଇ ରାସ୍ତା ବନ୍ଦ କରିଦେଲେ । ଇର୍ମିଙ୍କ

ଦଳ ସେଠାରେ ପହଞ୍ଚିବାକ୍ଷଣି ସେମାନଙ୍କ ଉପରେ ବିଦ୍ରୋହୀମାନେ ଗୁଳି ଫୁଟାଇଲେ । ବିଦ୍ରୋହୀମାନେ ଏହି ବାଟରେ ଇଂରେଜ ସୈନ୍ୟଦଳଙ୍କୁ ଯୁଦ୍ଧ ନ ଦେବାପାଇଁ ସୁଦୃଢ଼ ବ୍ୟବସ୍ଥା କରିଥିଲେ । ଗୁଳି ଫାଏର ଦେଖି ଇଂରେଜମାନେ ଆଉ ଅଗ୍ରସର ହେବା ସହଜ-ନୁହେଁ ଭାବି ସେମାନଙ୍କ ଭିତରେ ବିଚାର କରି ରାତିଟି ସେଠାରେ କଟାଇବାକୁ ସ୍ଥିର କଲେ । ସକାଳୁ ବିଦ୍ରୋହୀମାନଙ୍କୁ ହଟାଇ ବାଟ ସଫା କରି ଖୋର୍ଦ୍ଧା ଆଡ଼କୁ ଅଗ୍ରସର ହେବା ମଧ୍ୟ ସ୍ଥିର ହେଲା ଇତ୍ୟାଦି ।”

କେବଳ ଏତିକି ନୁହେଁ, ଓଡ଼ିଆ ଜାତିକୁ ରକ୍ଷା କରିବାଲାଗି ଚନ୍ଦନ ହଜୁରିଙ୍କ ଅବଦାନ ମଧ୍ୟ କମ୍ ନୁହେଁ । ଚନ୍ଦନ ହଜୁରିଙ୍କ ଜୀବନୀ ଉପରେ ପୂର୍ଣ୍ଣାଙ୍ଗ ଇତିହାସ ରଚିତ ହେଲେ ତାହାଙ୍କର ମହତ୍ତ୍ୱ ଓ ବୀରତ୍ୱ ସହଜରେ ଜଣାପଡ଼ିବ ।

ଶେଷରେ ଏତିକି କହିଲେ ଯଥେଷ୍ଟ ହେବ ଯେ, ଯେଉଁ ଦୃଷ୍ଟିରେ ସମର ସାହିତ୍ୟ ସୃଷ୍ଟି ହେବା କଥା, ସେହି ହିସାବରେ ଓଡ଼ିଶାରେ ସମର ସାହିତ୍ୟ ବିଶେଷ ନାହିଁ । ଅନେକ ଲେଖକଙ୍କର ଲେଖା ମଧ୍ୟରେ ସୈନିକତ୍ୱ କେତେ ଧାଡ଼ି ବର୍ଣ୍ଣନା କରାଯାଇଛି ସତ୍ୟ; ମାତ୍ର ସମରକୁ ଉପଜୀବ୍ୟ କରି ସମରତରଙ୍ଗର ସୃଷ୍ଟି ପରି ଓଡ଼ିଶାରେ ଅନ୍ୟ କିଛି ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ଯୁଗର ପରିବର୍ତ୍ତନ ସଙ୍ଗେ ସମାଜର ତଥା ମାନବର ବୁଦ୍ଧିବୃତ୍ତିର ମଧ୍ୟ ପରିବର୍ତ୍ତନ ଘଟିବା ସ୍ୱାଭାବିକ । ପ୍ରଥମ ବିଶ୍ୱଯୁଦ୍ଧ ପରେ ଦ୍ୱିତୀୟ ବିଶ୍ୱଯୁଦ୍ଧ, ଚୀନ୍‌ର ଭାରତକୁ ଆକ୍ରମଣ, ପାକିସ୍ତାନ ସହିତ ଭାରତର ଯୁଦ୍ଧ—ଏହିପରି କେତେ କଣ ଘଟିଯାଇଛି । ଓଡ଼ିଆ ଆଜି ଓଡ଼ିଆ ମଧ୍ୟରେ ସୀମିତ ନ ରହି ମହାଭାରତୀୟ ପ୍ରାଣରେ ନିଜକୁ ମିଶାଇ ଦେଇଛି । ଆଜି ଯଦି ସେ ନୂତନ କିଛି ସୃଷ୍ଟି କରେ, ତେବେ ସୃଷ୍ଟି-

ଜଣକ ବର୍ଷର ଯୁଦ୍ଧକୌଶଳ । ମାତ୍ର ଓଡ଼ିଆ ଲେଖକଙ୍କର ଲେଖାମାନରେ ଯଦିବା ତାହା ବିଶେଷ ଦେଖା ନ ଦେଇଛି, ତେବେ ଜାତିକୁ ଜାଗ୍ରତ କରିବା ପାଇଁ ସେ ତାର କବିତା ମାଧ୍ୟମରେ ଉଦ୍‌ବୋଧନା ଶୁଣାଇଛି । କବି ୰ ଗୋଦାବରୀଶ ମହାପାତ୍ରଙ୍କର 'ଦେଶ ଇତିହାସ ଲେଖା' କବିତାରେ ଚୀନ୍ ସହିତ ଭାରତର ଯୁଦ୍ଧ ସମ୍ପର୍କରେ ବର୍ଣ୍ଣନା କରାଯାଇଛି । ସେ ଲେଖିଛନ୍ତି—

"ନଦୀ ପର୍ବତ ପଥ ପ୍ରାନ୍ତର ଭୂଷର ଝଞ୍ଜା ତଳେ
ଉଠେ ପ୍ରତିତାଳ ଗୋଳା ବନ୍ଧୁକ କମାଣ ଗର୍ଜନରେ
ଶୁଭ୍ର ଶୀତଳ ବରଫ ବୁକୁରେ ତପ୍ତ ରୁଧିର ଝରେ
ଆଜ ଏତେବେଳେ କରିବାକୁ ଦେଶ ଗତି ତୋ ଷିପ୍ରତର ।
ସେ ପୀତ ଡ୍ରାଗନ ଅତି ବୁଭୁକ୍ଷୁ ହିଂସ୍ର ଲୋଲୁପ ଶଠ
ଶାଣିତ ତୋର ହିମ ଗିରିତଳେ ଲେପଟି ରକ୍ତିତ ସ୍ଵର୍ଣ୍ଣ
ଆକୁମାରୀ ହିମାଚଳ ସହ୍ୟାଦ୍ରି ବିନ୍ଧ୍ୟ ଥରଇ ଉଠ
ଆଜ ଏତେବେଳେ ଆଉରେ ମୋର ମନ ବସିବାକୁ ବେଳ ନାଇଁ ।

କବିଙ୍କର 'ଉଠ କଙ୍କାଳ' କବିତାଟି ମଧ୍ୟ ଜାତୀୟ ପ୍ରୀତିର ଏକ ଜ୍ଵଳନ୍ତ ନିଦର୍ଶନ । ଭଗ୍ନପ୍ରାଣ ଉତ୍କଳ ଆଗରେ ଅତୀତର ଗୌରବୋଜ୍ଜ୍ଵଳ ଇତିହାସ ବଖାଣ କରି ଜାତିକୁ ଜାଗ୍ରତ କରିବା ପାଇଁ ସେ ଶତତ ଚେଷ୍ଟିତ ହୋଇଛନ୍ତି । ତେଣୁ ଲେଖିଛନ୍ତି—

"ଉଠ କଙ୍କାଳ, ଜାଗ କଙ୍କାଳ
ଜାଗ ଦୁର୍ବଳ ଆଜ ।

× × ×

ଗଂଗା ଧୋଇଲା ଚକୁର ଯାହାର କୃଷ୍ଣା ଚରଣ ତଳ
ଶମଶାନ ଆଜ ମହାଦେଶ ଆଜ ଏହି ସେହି ଉତ୍କଳ ।"

———